# ବଡ଼ ମଣିଷଙ୍କ
# ପିଲାଦିନ କଥା






ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା

# ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା

## ରାଷ୍ଟ୍ରୀୟ ଏକତା ଓ ଆତ୍ମନିର୍ଭରଶୀଳତା ପାଇଁ
## ବିଜ୍ଞାନ ଓ ସାକ୍ଷରତା ମାଧ୍ୟମରେ ନିରନ୍ତର ପ୍ରୟାସ

ସମାଜରେ ବ୍ୟାପ୍ତ ଦାରିଦ୍ର୍ୟ, ଶୋଷଣ ଓ ଅଜ୍ଞାନକୁ ଦୂର କରି ନ୍ୟାୟ, ସମାନତା ଓ ସହଯୋଗ ଉପରେ ଆଧାରିତ ପରିବର୍ତ୍ତନ ଆଣିବା ପାଇଁ ଏକ ସହଯୋଗପୂର୍ଣ୍ଣ, ଗଣତାନ୍ତ୍ରିକ ସାମାଜିକ ବ୍ୟବସ୍ଥାର ନିର୍ମାଣ କରିବା ଓ ତାକୁ ମଜଭୁତ କରିବା କାମରେ ସକ୍ରିୟ ଥିବା (୨୫ ଟି ରାଜ୍ୟରେ ଓ ୩୦୦ ଜିଲ୍ଲା ସ୍ତରରେ) ଏକ ଦେଶବ୍ୟାପୀ ସାମାଜିକ ସଂଗଠନ ହେଉଛି ଭାରତ ଜ୍ଞାନ ବିଜ୍ଞାନ ସମିତି ।

ଦେଶବ୍ୟାପୀ ସାକ୍ଷରତା ଅଭିଯାନ ପାଇଁ ୧୯୮୯ ବର୍ଷରେ ଆନୁଷ୍ଠାନିକ ଭାବେ ପ୍ରତିଷ୍ଠିତ ଏହି ସଂଗଠନର ମୂଳ ଉଦ୍ଦେଶ୍ୟ ଜନତାକୁ ନିଜର ଦୂରାବସ୍ଥାର କାରଣ ଜାଣିବା ପାଇଁ ପ୍ରେରିତ କରିବା ଏବଂ ସେମାନଙ୍କର ଚିନ୍ତାକୁ ତାର୍କିକ ଓ ବିଜ୍ଞାନ ସମ୍ମତ କରିବା । ଏଥିପାଇଁ ବିଜ୍ଞାନକୁ ଲୋକପ୍ରିୟ କରିବା ।

କଳା, ସଂସ୍କୃତି, ଗୋଷ୍ଠୀ, ପୁସ୍ତକ ପ୍ରକାଶନ, ଜନସଚେତନତା ଅଭିଯାନ, ଅଧିବେଶନ ଆଦି ମାଧ୍ୟମରେ ସାଂସ୍କୃତିକ, ସାମାଜିକ ସ୍ତରରେ ବ୍ୟାପ୍ତ ଅନ୍ଧବିଶ୍ୱାସ, କୁନୀତି ଓ ଭ୍ରାନ୍ତଧାରଣାଗୁଡ଼ିକୁ ସମାପ୍ତ କରିବା ପାଇଁ ଭାରତ ଜ୍ଞାନ ବିଜ୍ଞାନ ସମିତି ପ୍ରତିବଦ୍ଧ ଅଟେ ।

ଆସନ୍ତୁ ଏହି ଅଭିଯାନରେ ସାମିଲ ହେବା ଏବଂ ସୁଖମୟ ସଚେତନ ସ୍ୱାବଲମ୍ବୀ ଭବିଷ୍ୟତ ଆଡ଼କୁ ଅଗ୍ରସର ହେବା ।

# ବଡ଼ ମଣିଷଙ୍କ ପିଲାଦିନ କଥା

ଡ. ଉଦ୍ଧବ ଚରଣ ନାୟକ




ଭାରତ ଜ୍ଞାନବିଜ୍ଞାନ ସମିତି, ଓଡ଼ିଶା
ସି-୧୨୪(ଏଚ୍.ଆଇ.ଜି.), ହାଉସିଂ ବୋର୍ଡ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩,
ଫୋନ-୦୬୭୪-୨୩୫୫୮୯୧ ।

| | |
|---|---|
| ବହିର ନାମ | **ବଡ଼ ମଣିଷଙ୍କ ପିଲାଦିନ କଥା** |
| ଲେଖକ | ଡ. ଉଦ୍ଧବ ଚରଣ ନାୟକ |
| ପ୍ରଥମ ପ୍ରକାଶନ | ୨୦୧୬ |
| ପ୍ରକାଶକ ଓ ସତ୍ତ୍ୱାଧିକାରୀ: | ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା<br>ସି-୧୨୪(ଏଚ୍.ଆଇ.ଜି.), ହାଉସିଂ ବୋର୍ଡ କଲୋନୀ,<br>ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩<br>ଫୋନ-୦୬୭୪-୨୩୫୫୮୯୧ |
| ମୁଦ୍ରଣ | ବିଶ୍ୱରୂପା |
| ଅକ୍ଷର ସଜ୍ଜା | ସାରଦା କୁମାର ସାହୁ |
| ମୂଲ୍ୟ | ଟ. ୫୨.୦୦ମାତ୍ର |

| | |
|---|---|
| Book Name | **Bada Manisanka Piladinar Katha** |
| Writer | Dr. Uddhab Charan Nayak |
| Published by | Bharat Gyan Vigyan Samiti, Odisha<br>C-124, (HIG) Housing Board Colony,<br>Baramunda, Bhubaneswar-751003,<br>Ph.: 0674-2355891 |
| First Edition | 2016 |
| Pinted at | Biswarupa |
| Price | Rs. 52.00 |

ଏହି ପୁସ୍ତିକାଟି ପିଲାମାନଙ୍କର **ପଠନ ଅଭ୍ୟାସ ବୃଦ୍ଧି ଅଭିଯାନ** (Campaign for Promotion of Reading Habits)ପାଇଁ ପ୍ରସ୍ତୁତ କରାଯାଇଛି । ଓଡ଼ିଶାର ପିଲାମାନଙ୍କ ପଠନ ରୁଚି ବଢାଇବା ସହ ପାଠାଗାର ଆନ୍ଦୋଳନ ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ମହତ ଉଦ୍ୟମ ।

# ଲେଖକ କହନ୍ତି.....

'ତୁଳସୀ ଦୁଇ ପତ୍ରରୁ ବାସିଲା ପରି' ବଡ଼ ମଣିଷମାନଙ୍କ ଠାରେ ବାଲ୍ୟକାଳରେ ଅନେକ ସୁଗୁଣ ଦେଖିବାକୁ ମିଳିଥାଏ । ଆମ ଭାରତବର୍ଷର କେତେଜଣ ବଡ଼ ମଣିଷ ଓ ପୃଥିବୀର ଦୁଇ ଅନ୍ୟତମ ଗଣତାନ୍ତ୍ରିକ ରାଷ୍ଟ୍ର ଆମେରିକା ଓ ଇଂଲଣ୍ଡର ଦୁଇ ମୁଖ୍ୟଙ୍କ ପିଲାଦିନର କଥା ଏହି ପୁସ୍ତକରେ ପରିବେଷଣ କରାଯାଇଛି । ଏସବୁ ଆମ ପିଲାମାନଙ୍କ ଭବିଷ୍ୟତ ଜୀବନ ଗଠନରେ ବିଶେଷ ସହାୟକ ହେବ । ପିତାମାତାମାନେ ଭଲଭାବରେ ଏହାକୁ ପଢି ମନନଶୀଳ ହେବା ଦରକାର । କାରଣ ପିତାମାତା ପଢିଲେ ହିଁ ପିଲାମାନେ ସେମାନଙ୍କ ମୁହଁରୁ ଶୁଣି ଖୁସିହେବେ । ପିଲାମାନେ ମଧ୍ୟ ନିଜେ ପଢି ଆହୁରି ଖୁସି ହେବେ ।

ଏହି ଲେଖାଗୁଡିକ ପୂର୍ବରୁ ରବିବାର ସମାଜର ଶିଶୁ ରାଇଜ ଓ ସମାଜ ସାପ୍ତାହିକୀ, ମାସିକ ଶିଶୁ ପତ୍ରିକା ନନ୍ଦନକାନନ, ସଂସାର ଓ ତ୍ରୟମାସିକ ଶିଶୁ ପତ୍ରିକା ଝୁମୁକାରେ ପ୍ରକାଶ ପାଇ ପାଠକପାଠିକାମାନଙ୍କ ପାଖରେ ବେଶ୍ ଆଦର ଲାଭ କରିଥିଲା । **ଭାରତ ଜ୍ଞାନ ବିଜ୍ଞାନ ସମିତି** ଏହାକୁ "ବଡ଼ ମଣିଷଙ୍କ ପିଲାଦିନ କଥା" ଭାବରେ ପ୍ରକାଶ କରିଥିବାରୁ ଧନ୍ୟବାଦାର୍ହ ।

ଶେଷରେ ଆଜିର ପବିତ୍ର ଶିଶୁ ଦିବସରେ ଅଗଣିତ ପିଲାମାନଙ୍କ ହାତରେ ଏହି ପୁସ୍ତକକୁ ସମର୍ପଣ କରି ନିଜକୁ ଧନ୍ୟ ମନେକରୁଛି । ଆଶା ଏହା ପିଲାମାନଙ୍କ ପାଖରେ ଆଦର ଲାଭକରିବ ।

# ଏଥିରେ ପଢ଼ିବା.......



# ବାଳକ ଶିକ୍ଷକରୁ ଶିକ୍ଷାମନ୍ତ୍ରୀ

ଶିକ୍ଷକ ଜଣେ ଚଉଦ ବର୍ଷର ବାଳକ । ଚଉଦ ବର୍ଷର ପାଠକୁ ମାତ୍ର ଚାରିବର୍ଷରେ ଶେଷ କରି ସେ ହୋଇଗଲେ ଶିକ୍ଷକ । ତାଙ୍କର ଛାତ୍ର ଜଣେ ଷାଠିଏ ବର୍ଷର ବୁଢ଼ା । ଦାଢ଼ି ପାଚିଯାଇଛି । ଦାଢ଼ି ଲମ୍ବିଛି ଆଣ୍ଠୁଯାଏ । ବୃଦ୍ଧ ଛାତ୍ର ଜଣକ ମୁସଲମାନ । ସେ ଅପାଠୁଆ ବୋଲି ତାଙ୍କ ମନରେ ଭାରି ଦୁଃଖ । କେମିତି ଦି' ଅକ୍ଷର ପାଠ ପଢ଼ିବି, କିଛି ଜାଣିବି ବୋଲି ତାଙ୍କର ଭାରି ଇଚ୍ଛା । ପାଠ ପଢ଼ିବା ଜିଦ୍‌ରେ ସେ ଅଟଳ । ସେଇଥି ପାଇଁ ସେ ପାଠ ପଢ଼ିବା ପାଇଁ ହିଁ ଆସିଛନ୍ତି ଏହି ବାଳକ ଶିକ୍ଷକଙ୍କ ପାଖକୁ ।

ଦିନକର କଥା । ସେଦିନ ଶିକ୍ଷକଙ୍କ ମନ ବହୁତ ଖରାପ । ସେ ବଡ ବ୍ୟସ୍ତ

ହୋଇଗଲେଣି ଏଇ ବୃଦ୍ଧ ଛାତ୍ରଙ୍କ ପାଇଁ । କାରଣ ସେ ଦୁଇଦିନ ହେବ ଗୋଟିଏ ବିଷୟ ଏହି ଛାତ୍ରଙ୍କୁ ବୁଝାଉଛନ୍ତି ନାନା ଉଦାହରଣ ଦେଇ । ହେଲେ ବୃଦ୍ଧ ଛାତ୍ର ତାହା ଜମାରୁ ବୁଝିପାରୁ ନାହାନ୍ତି । 'ବୁଝିପାରିଲ ନା ନାହିଁ ?' ବୋଲି ଯେତେଥର ଶିକ୍ଷକ ପଚାରନ୍ତି, ସେ ଛାତ୍ର ଦାଢି ହଲାଇ ହଲାଇ ଖାଲି 'ନା' କରୁଛନ୍ତି । 'କିଛି ବୁଝିପାରିଲି ନାହିଁ' ବୋଲି କହୁଛନ୍ତି ।

ବୃଦ୍ଧଛାତ୍ରଙ୍କ କଥା ଶୁଣି ବାଳକ ଶିକ୍ଷକ ଭୀଷଣ ଭାବରେ ରାଗିଗଲେ । ତାଙ୍କ ରାଗର ସୀମା ଟପିଗଲା । ସେ ରାଗ ତମ ତମ ହୋଇ କହିଲେ, 'ତୁମେ ମଣିଷ ନା ପଶୁ ? ପାଞ୍ଚ ସାତ ଥର ଗୋଟିଏ ପଶୁକୁ ବୁଝାଇ ଦେଲେ ସେ ବୁଝିଯିବ । ଅଥଚ ତୁମକୁ କୋଡିଏ ଥର ସେହି ଗୋଟିଏ ବିଷୟକୁ ବୁଝାଇଲେ ବି ତୁମେ ବୁଝିପାରୁ ନାହଁ ! ଛି, ଛି, ଧିକ କହିବ ତୁମ ପାଠପଢାକୁ । ଏ ଜନ୍ମରେ କ'ଣ ? ସାତ ଜନ୍ମରେ ବି ତୁମ ଦ୍ୱାରା ପାଠ ହେବ ନାହିଁ । ଯାଅ, ଯାଅ ... ଶୀଘ୍ର ଚାଲିଯାଅ ମୋ ଆଗରୁ...' ।

ବୃଦ୍ଧ ଛାତ୍ରଙ୍କର ପାଠ ପଢାରୁ ପୂରାପୂରି ଉତ୍ସାହ ତୁଟିଗଲା । ସେ ନିଜକୁ ନିର୍ବୁଦ୍ଧିଆ, ବୁଦ୍ଧୁ ବୋଲି ଧରିନେଲେ । ମନକୁ ମନ କହିଲେ, 'ଖୁଦା ତାଙ୍କୁ ପଢିବା ପାଇଁ ଶକ୍ତି ଦେଇ ନାହାନ୍ତି । ମେଣ୍ଢା ଚରାଇବା ପାଇଁ ତାଙ୍କୁ ଜନ୍ମ ଦେଇଛନ୍ତି ।' ମନଦୁଃଖରେ ଘରକୁ ଚାଲି ଆସିଲେ । ନିରୋଳାରେ ବସି ପିଲାଙ୍କ ପରି କଇଁ କଇଁ ହୋଇ କାନ୍ଦିବାରେ ଲାଗିଗଲେ । ସେଦିନ ତାଙ୍କର ଖିଆପିଆ ସବୁ ବନ୍ଦ ।

ଏହି ବାଳକ ଶିକ୍ଷକଙ୍କ ପିତା ଜଣେ ଜ୍ଞାନୀ ଗୁଣୀ ଲୋକ । ତାଙ୍କ କାନରେ ଯାଇ ଏକଥା ପଡିଲା । ପୁଅର ଏପରି ଆଚରଣରେ ସେ ଗଭୀର ମନଦୁଃଖ କଲେ । ନିଜକୁ ଧିକ୍କାର କରି କହିଲେ, "ଏତେ ପାଠଶାଠ ପଢି ବି ତାଙ୍କ ପୁଅ ଶିଷ୍ଟାଚାରର ସୀମ ଟପିଗଲା । ସେ ଠିକ୍ ଭାବରେ ତାର କର୍ତ୍ତବ୍ୟ ପାଳନ କରିପାରିଲା ନାହିଁ । ଏହା ବଡ ଲଜ୍ଜାଜନକ କଥା । ବୟସ୍କମାନଙ୍କୁ ସମ୍ମାନ ଜଣାଇବା ସମସ୍ତଙ୍କର କର୍ତ୍ତବ୍ୟ । ମୋର ପୁଅ ଏତେ ପାଠ ପଢି ମୂର୍ଖ ପରି କାମ

କଲା । ସେ ନିଜକୁ କ'ଣ ବୋଲି ଭାବୁଛି କି ?" ସେ ବଡ ବିଚଳିତ ହୋଇ ପଡିଲେ ।

ତାଙ୍କର ଶିକ୍ଷକ ପୁତ୍ରକୁ ସେ ଡକାଇ ପଠାଇଲେ । ଶିକ୍ଷକ ପୁତ୍ର ଆସି ପିତାଙ୍କ ପାଖରେ ସଙ୍ଗେ ସଙ୍ଗେ ପହଞ୍ଚିଗଲେ । ପୁତ୍ର କି ଦୋଷ କରିଛି, ସେ କଥା ପିତା ଭଲକରି ବୁଝାଇ ଦେଲେ । ଆଉ ଶୀଘ୍ର ଯାଇ ସେହି ବୃଦ୍ଧବ୍ୟକ୍ତିଙ୍କୁ କ୍ଷମା ମାଗିବା ପାଇଁ ପୁତ୍ରକୁ ଆଦେଶ ଦେଲେ । ସେ ପିତାଙ୍କ କଥା ଶୁଣିଲେ । ତାଙ୍କର ଆଚରଣ ପାଇଁ ପିତାଙ୍କର ମନ ଭୀଷଣ ଦୁଃଖ ବୋଲି ଜଣାଇଲେ । ବାଳକ ଶିକ୍ଷକ ନିଜର ଭୁଲ୍ ବୁଝିପାରିଲେ । ନିଜର ଆଚରଣ ପାଇଁ ସେ ନିଜକୁ ଦୋଷୀ ବୋଲି ମାନିନେଲେ । ଗଭୀର ଦୁଃଖ ପ୍ରକାଶ କଲେ । ଅନୁତାପ ମଧ୍ୟ କଲେ । ଏକ ମୁହାଁ ହୋଇ ଦୌଡିଲେ ତାଙ୍କର ସେହି ବୃଦ୍ଧ ଛାତ୍ରଙ୍କ ଘରକୁ । ତାଙ୍କ ଗୋଡତଳେ ପଡିଯାଇ ପାଦଧରି କ୍ଷମା ମାଗିଲେ । ନିଜ ଶିକ୍ଷକଙ୍କର ଏହିପରି ବ୍ୟବହାରରେ ବୃଦ୍ଧ ଛାତ୍ର ଘାବରେଇ ଗଲେ । ଏସବୁ କ'ଣ ହେଉଛି ବୋଲି ସେ କିଛି ବୁଝିପାରିଲେ ନାହିଁ । ଗତକାଲି ତାଙ୍କର ଶିକ୍ଷକଙ୍କୁ କ୍ଷମା ମାଗିବାର ଥିଲା । ପାଠ ବୁଝିପାରୁ ନଥିଲେ ବୋଲି । ହେଲେ ସେ ଆଜି ତାଙ୍କର ଶିକ୍ଷକଙ୍କୁ ନିଜ ଘରେ ନିଜ ପାଖରେ ଦେଖୁଛନ୍ତି !! ଆଉ ସେ ବଡ ବିନୟ ଭାବରେ ତାଙ୍କୁ କ୍ଷମା ମାଗୁଛନ୍ତି । ତାଙ୍କର ଗତିବିଧି ରୂପ ବଦଳିଯାଇଛି । ବୃଦ୍ଧ ଛାତ୍ର ତାଙ୍କର ବାଳକ ଶିକ୍ଷକଙ୍କୁ କ୍ଷମା କରିଦେଲେ ।

ବାଳକ ଶିକ୍ଷକ ଆଉ ଟିକିଏ ବଡ ହୋଇଗଲେ । ତାଙ୍କୁ ବୟସ ଆସିହେଲା ଅଠର ବର୍ଷ ପାଖାପାଖି । ସେ ହୋଇଗଲେ ଗୋଟିଏ ଜଣାଶୁଣା ପତ୍ରିକାର ସଂପାଦକ । ତାଙ୍କର ଲେଖା ପଢି ଶିକ୍ଷିତ ଓ ପଣ୍ଡିତ ଲୋକଙ୍କ ଭିତରେ ଚହଳ ପଡିଗଲା । ଲୋକମାନେ ପତ୍ରିକାର ସଂପାଦକଙ୍କୁ ଜଣେ ବିଶିଷ୍ଟ ତଥା ବିଜ୍ଞ ବ୍ୟକ୍ତି ଭାବରେ ଗ୍ରହଣ କରିନେଲେ । ଭାବିଲେ ଏହି ସଂପାଦକ ଜଣେ ବୟସ୍କ ଲୋକ ହୋଇଥିବେ ନିଶ୍ଚୟ । ଥରେ ବିଦ୍ୱାନ ଓ ପଣ୍ଡିତ ଲୋକମାନଙ୍କର ଗୋଟିଏ ସଭା ବସିବା ପାଇଁ ଠିକ୍ ହେଲା । ସେମାନେ ଏହି ସଂପାଦକଙ୍କୁ ମୁଖ୍ୟବକ୍ତା ଭାବରେ ନିମନ୍ତ୍ରଣ କଲେ ।

ନିର୍ଦ୍ଦିଷ୍ଟ ଦିବସରେ ସଭା ବସିଲା । ବିଦ୍ୱାନମାନେ ଆସି ଉପସ୍ଥିତ ହୋଇଗଲେ । ମୁଖ୍ୟବକ୍ତା, ପତ୍ରିକାର ସଂପାଦକ ଯାଇ ପହଂଚିଗଲେ । ହେଲେ ସଭାର ଆୟୋଜକ ତାଙ୍କୁ ଦେଖି ନିରାଶ ହୋଇଗଲେ । ସେ ଭାବିଲେ, 'ସଂପାଦକ ନିଜେ ନଆସି ବୋଧେ ତାଙ୍କ ପୁଅକୁ ପଠାଇ ଦେଇଛନ୍ତି ।' ସେ ସେହି ବାଳକଙ୍କୁ ପଚାରିଲେ, "କ'ଣ ଆପଣଙ୍କ ପିତା ଆସି ପାରିଲେ ନାହିଁ କି ? ସେଇଥି ପାଇଁ ଆପଣଙ୍କୁ ପଠେଇ ଦେଇଛନ୍ତି ?"

ହସି ହସି ବାଳକ ଉତ୍ତର ଦେଲେ, 'ଆପଣ ତ ମୋତେ ଡାକିଥିଲେ ମୁଁ ଆସିଲି । ପିତାଜୀଙ୍କର ତ ଆସିବାର ନଥିଲା । ସେ କାହିଁକି ଆସନ୍ତେ ?' ଏବେ ସଭାର ଆୟୋଜକ ଜାଣିପାରିଲେ ଯେ, ଏହି ବାଳକ ହେଉଛନ୍ତି ସେହି ପତ୍ରିକାର ବିଜ୍ଞ ସଂପାଦକ । ସେ ବଡ ଆଶ୍ଚର୍ଯ୍ୟ ହୋଇଗଲେ ।

ସମସ୍ତେ ମୁଖ୍ୟବକ୍ତାଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଶୁଣିଲେ । ଭାଷଣ ଶୁଣି ବିଦ୍ୱାନ ମଣ୍ଡଳୀ ଆଶ୍ଚର୍ଯ୍ୟ ଓ ଚକିତ ହୋଇଗଲେ । ସେମାନେ କୁହାକୁହି ହେଲେ – 'ଏହି ବାଳକ ଭବିଷ୍ୟତରେ ଜଣେ ବିଦ୍ୱାନ, ବଡ ଲୋକ ଭାବରେ ପରିଚିତ ହେବେ ।

ସେମାନଙ୍କ କଥା ମିଛ ହେଲା ନାହିଁ । ସେ ବାଳକ ବଡ ହୋଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ଜଣେ ବିଶିଷ୍ଟ ରାଜନୀତିଜ୍ଞ ହିସାବରେ ପ୍ରସିଦ୍ଧି ଲାଭ କଲେ । ଅନେକ ନେତା ତାଙ୍କୁ ରାଜନୀତିର ଗୁରୁବୋଲି ଭାବିଲେ । ସେ ହେଲେ ସ୍ୱାଧୀନ ଭାରତର ପ୍ରଥମ ଶିକ୍ଷାମନ୍ତ୍ରୀ । ତାଙ୍କ ନା 'ମୌଲାନ ଆବୁଲ କାଲାମ ଆଜାଦ୍ ।' ସେ ଜନ୍ମ ହୋଇଥିଲେ ୧୮୮୮ ମସିହାରେ ମକ୍କା ସହରରେ । ତାଙ୍କର ପରଲୋକ ଘଟିଥିଲା ୧୯୫୮ ମସିହା ଭାରତର ରାଜଧାନୀ ନୂଆଦିଲ୍ଲୀ ଠାରେ ।

***



# ମାଛ ବିକାଳୀରୁ ପ୍ରଧାନମନ୍ତ୍ରୀ

ମାଛ ନବ..... ମାଛ ! ଗୋଟିଏ ଛୋଟ ପିଲା ମୁଣ୍ଡରେ ତା'ର ମାଛର ଝୁଡି । ସାହି ସାହି ବୁଲି ଡାକଛାଡି ମାଛ ବିକୁଛି । ତା'ର ମା-ବାପା ବୁଢ଼ୀ-ବୁଢ଼ା ହୋଇଗଲେଣି । ଖଟିବାକୁ ସେମାନଙ୍କ ଦେହରେ ବଳ ନାହିଁ । ବାପା ମାଛଧରି ଆଣନ୍ତି । ପୁଅ ମାଛ ନେଇ ବିକେ । ମାଛ ବିକିସାରି ପିଲାଟି ଶୀଘ୍ର ଶୀଘ୍ର ଘରକୁ ଫେରେ । କଣ ଗଣ୍ଡେ ଖାଇ ଦେଇ ଚାଲିଯାଏ ପାଠଶାଳାକୁ । ପାଠ ପଢ଼ାରେ କେବେ ଅବହେଳା କରେନି । ମନଦେଇ ପାଠ ପଢ଼େ । ଏତେ କଷ୍ଟ କରି ବି ସେ ସବୁଦିନ ଠିକ୍ ସମୟରେ ପାଠଶାଳାକୁ ଯାଏ । ଦିନେ ହେଲେ ବି ଅନୁପସ୍ଥିତ ରହେ ନାହିଁ । ଗୁରୁଜୀମାନେ ତା ଉପରେ ଭାରୀ ଖୁସି ।

୧୮୮୫ ମସିହାରେ ସ୍କଟଲ୍ୟାଣ୍ଡରେ ପିଲାଟିର ଜନ୍ମ । ପିଲାଟି ଆଗକୁ ବେଶୀ ପଢିପାରିଲା ନାହିଁ । ଯାଇ ବସିଲା ଡାକଘର ବାରଣ୍ଡାରେ ଦୁଆତ କଲମ ଧରି । ପଢାଲେଖା ଜାଣି ନଥିବା ଲୋକେ ଡାକ ଘରକୁ ଆସନ୍ତି । ଚିଠି ଲେଖାଇ ପଠାଇବା ପାଇଁ । ଟଙ୍କା ମନିଅର୍ଡର କରିବା ପାଇଁ । ପିଲାଟି ସେମାନଙ୍କ ପାଇଁ ଚିଠି ଲେଖିଦିଏ । ମନିଅର୍ଡର ଫର୍ମ ପୂରଣ କରିଦିଏ । ଏଥିରୁ କିଛି ରୋଜଗାର କରେ । ସେଇ ପଇସା ନେଇ ବାପାଙ୍କ ହାତରେ ଦିଏ । ସେଇଥିରେ ଘର ଚଳେ । ଏମିତି କିଛିଦିନ ବିତିଗଲା ।

ସେହି ସମୟର କଥା ତାଙ୍କ ସାହିରେ ଜଣେ ଭଦ୍ରଲୋକ ଭଡାରେ ଆସି ରହିଲେ । ଭଦ୍ରଲୋକଙ୍କ ଘରେ ଆଲମିରାରେ ବହୁତ ବହି । ପିଲାଟି ବହିଦେଖି ଖୁସି ହୋଇଗଲା ବହି ପଢିବା ପାଇଁ ତାର ମନହେଲା । ସେହି ଭଦ୍ରଲୋକ ସହ ସେ ମିଶିଲା ଆଳାପ ଆଲୋଚନା କଲା, ବହି ପଢିବା ପାଇଁ ଦେବାକୁ ଅନୁରୋଧ କଲା । ପିଲାଟିର ଆଗ୍ରହ ଦେଖି ଭଦ୍ରଲୋକ ଜଣକ ଭାରୀ ଖୁସିହେଲେ । ବହି ପଢିବା ପାଇଁ ଦେଲେ ।

ପିଲାଟି ଅଳପ ଦିନ ଭିତରେ ବହୁତ ବହି ପଢି ପକାଇଲା । ପିଲାଟିର ବହି ପଢାରେ ଅଦ୍ଭୁତ ଶକ୍ତି ଦେଖି ଭଦ୍ରଲୋକ ବଡ ଆଶ୍ଚର୍ଯ୍ୟ ହୋଇଗଲେ । ମନେ ମନେ ଭାବିଲେ ହୁଏତ ଏମିତି ସେମିତି ପିଲା ନୁହେଁ ! ! ପାଠଶାଳାରେ ପଢୁଥିବା ବେଳେ ଗୁରୁଜୀମାନେ ଏଇ ପିଲାକୁ ଭଲ ଭାବରେ ନିରୀକ୍ଷଣ କରୁଥିଲେ । ପିଲାଟିର ସବୁ କଥାରେ ନଜର ରଖୁଥିଲେ । ଏଇ ପିଲା ବଡ ହେଲେ ଜଣେ ବଡମଣିଷ ହେବ ବୋଲି ଜାଣିପାରିଲେ । ଫଳରେ ସେମାନେ ପିଲାଟିର ପଢାପଢିରେ ଭଲ ନଜର ଦେଉଥିଲେ । ଖୁବ୍ ଅଳ୍ପ ବୟସର ପିଲାଟି ସାହିତ୍ୟ ଓ ବିଜ୍ଞାନର ଭଲ ଭଲ ବହି ସବୁ ପଢିଲେ । ତା ପରେ ପଢିଲେ ରାଜନୀତି ଉପରେ ଅନେକ ବହି । ସେ ବଡ ହୋଇଗଲେ ।

ଅନେକ ବହି ପଢିଥିବା ଫଳରେ ତାଙ୍କ ମନରେ ଦେଶ ପାଇଁ ଅନେକ ଭାବନା ଆସି ପୂରିଲା । ଦେଶର କିପରି ଉନ୍ନତି କରିବେ ସେଥିପାଇଁ ସେ

ଅହରହ ଚିନ୍ତା କଲେ । ଦେଶ ସେବାରେ ମନ ପ୍ରାଣ ଢାଳିଦେଲେ । ୟାଙ୍କର ନାମ ହେଉଛି ରାମ୍‌ସେ ମ୍ୟାକଡୋନାଲଡ୍ । ସେ ହେଲେ ବିଲାତର ପ୍ରଧାନମନ୍ତ୍ରୀ । ଜଣେ ସାମାନ୍ୟ କେଉଟ ଘରର ପିଲା ହୋଇ ସେ ହେଲେ ବିଲାତ ପରି ଦେଶର ପ୍ରଧାନମନ୍ତ୍ରୀ । ଏହା କଣ କମ୍ ଗର୍ବ ଓ ଗୌରବର କଥା ! ! ସେ ଆଉ ନାହାନ୍ତି । ୧୯୩୧ ମସିହାରେ ତାଙ୍କର ପରଲୋକ ହୋଇଯାଇଛି ।

ଗଭୀର ଅଧ୍ୟୟନ ଓ ନିଜର ନିଷ୍ଠା ବଳରେ ସେ ବଡ ହୋଇ ପାରିଥିଲେ । ଅନେକ ବହି ପଢିବା ଫଳରେ ସେ ଜ୍ଞାନ ଅର୍ଜନ କଲେ ଓ ସଫଳତା ମଧ୍ୟ ପାଇଥିଲେ । ଭଲ ବହି ମଣିଷ ଉପରେ ଭଲ ପ୍ରଭାବ ପକାଏ ।

*** *** ***



# ବାଳକ ବେଳୁ ନେତା

ସେ ଗୋଟିଏ ନ'ବର୍ଷର ବାଳକ । ଏହି ବୟସରେ ପିଲାମାନେ ଖେଳକୁଦରେ ମାତିବାର କଥା । ହେଲେ ଏହି ବାଳକର ଖେଳ ଆଡକୁ ଆଦୌ ମନନାହିଁ । ସବୁବେଳେ ଉଦାସ । କାରଣ ବାପାମାଙ୍କ ଦେହ ଖରାପ । ବାପା-ମା'ଙ୍କର ସେବା କରିବା, ଗୋଡ ହାତ ଘଷିଦେବା, ସେମାନଙ୍କ ଛେପ ଖଙ୍କାର, ଔଷଧ ତାଟିଆ ସଫା କରିବା, ସେମାନଙ୍କ ପାଇଁ ପଥି ତିଆରି କରିବା ଓ ଡାକ୍ତରଙ୍କ ପାଖରୁ ଔଷଧ ଆଣିବା ହେଲା ଏହି ବାଳକର ନିତିଦିନର କାମ ।

ରାତ୍ରୀରେ ଉଜାଗର ରହି ଭଗବାନଙ୍କୁ ସେ ପ୍ରାର୍ଥନା କରନ୍ତି । ବିକଳ କଣ୍ଠରେ କହନ୍ତି, 'ହେ ଭଗବାନ ! ମୋ ବାପା-ମା'ଙ୍କୁ ଶୀଘ୍ର ଭଲ କରିଦିଅ' । ଯାହା

ହେଉ ଭଗବାନ ତାଙ୍କ ଡାକ ଶୁଣିଲେ । ବାପା ମା' ଭଲ ହୋଇଗଲେ । ଭଗବାନ ପିଲାଙ୍କ ଡାକ ଶୀଘ୍ର ଶୁଣନ୍ତି । ପୁଅ ଉପରେ ବାପା ମା ଭାରୀ ଖୁସି । ଦିନେ ମା' ପୁଅ ମଥାରେ ହାତରଖି ଆଶୀର୍ବାଦ କରି କହିଲେ, "ବାପା ! ମା' ପରି ମାତୃଭୂମି । ମା' ଆଉ ମାତୃଭୂମି ଦିହେଁ ସମାନ । ବଡ ହେଲେ ମନ ଦେଇ ମାତୃଭୂମିର ସେବା କରିବୁ ।''

ମା'ଙ୍କର ଏହି କଥା ପଦକ ବାଳକ ଗୁରୁମନ୍ତ୍ର ପରି ମନେରଖିଲେ । ପିଲା ଦିନରୁ ସେ ଭାବିଲେ ଦେଶ କଥା । ତାଙ୍କ ବାପା ଜଣେ ଶିକ୍ଷକ । ହେଲେ ବି ଘରର ଅବସ୍ଥା ସେତେ ଭଲ ନୁହେଁ । ବାଳକଙ୍କର ମା' ବଡ ବୁଦ୍ଧିମତୀ । ସେ ମନେ ମନେ ଡରୁଥିଲେ, "ପୁଅ ଯେମିତି ମନରେ ଦୁଃଖ ନକରୁ ସେ ଗରିବ ଘରେ ଜନ୍ମ ହୋଇଛି ବୋଲି । ଏକଥା ଭାବିଲେ ସେ ନିଜକୁ ଛୋଟ ମଣିବ । ଆଉ ତା' ଉନ୍ନତିରେ ବି ବାଧା ଘଟିବ" । ହେଲେ ପୁଅ ସେମିତିକା ପିଲା ନୁହେଁ । ସେ ବାପା-ମା'ଙ୍କ ଉପରେ ବୋଝ ହେବା ପାଇଁ ଚାହିଁଲେ ନାହିଁ । ମନଦେଇ ପାଠ ପଢିଲେ । ମାସକୁ ମାସ ବୃତ୍ତି ପାଇଲେ । ବୃତ୍ତି ପଇସାରେ ପାଠ ପଢିଲେ । ସେଥିରୁ ଯାହା ବଳିଲା ତାକୁ ଘର ଖର୍ଚ୍ଚ ପାଇଁ ମା'ଙ୍କ ହାତରେ ଦେଲେ ।

ଦେଶର ସେବା କରିବା ପାଇଁ ସେ ପିଲା ଦିନରୁ ଭାବିଲେ । ଏଗାର ବର୍ଷ ବୟସରେ ସେ ପାରସୀ ଭାଷା ଶିଖିଲେ । ପାରସୀ ଭାଷା ସେ ଭଲ ଭାବରେ ପଢି ପାରିଲେ ଓ ଭଲ କରି ଲେଖି ବି ଜାଣିଲେ । ସାଂଗ ପିଲାମାନେ ଗୁଡି ଉଡାଉଥିବାବେଳେ ସେ ଖବର କାଗଜ କିଣି ଆଣି ପଢିଲେ । ଦେଶ ଦୁନିଆର ବହୁତ ଖବର ଜାଣିଲେ । ଯାହା ଜାଣିଲେ ତାକୁ ଅନ୍ୟମାନଙ୍କୁ ଜଣାଇଲେ । ସତ କହିବା, ସଭିଙ୍କୁ ଭାଇ ବୋଲି ଭାବିବା ଓ ଦେଶ ସେବା କରିବା ପାଇଁ ସେ ଗାଁ ଲୋକଙ୍କୁ ବୁଝାଇଲେ । ସବୁବେଳେ ସେ ସାଙ୍ଗସାଥିମାନଙ୍କୁ ଭଲ କଥା କହିଲେ । ଏହାଦ୍ୱାରା ତାଙ୍କ ଦୁଇଟି ଲାଭ ହେଲା । ଏକରେ ସେ ହୋଇଗଲେ ଜଣେ ଭଲ ବକ୍ତା । ଦ୍ୱିତୀୟରେ ସେ ଯାହା କହିଲେ, ତାକୁ ଠିକ୍ ଭାବରେ କାମରେ ଲଗାଇଲେ । ସେ ହୋଇଗଲେ ଜଣେ ଦେଶ ସେବକ ।

ସେ ବଡ ହେଲେ । ତାଙ୍କ ପାଇଁ ଇଂରେଜ ସରକାରର ଚିନ୍ତା ବଢିଲା । ଲୋକେ ତାଙ୍କୁ କହିଲେ 'ପଞ୍ଜାବ କେଶରୀ' ସେ ଆଉ କେହି ନୁହଁନ୍ତି ସେ ହେଉଛନ୍ତି ଲାଲା ଲାଜପତ ରାୟ । ମା' କହିଥିବା କଥା, "ମାତୃଭୂମି ମା ପରି, ମାତୃଭୂମିର ସେବା କରିବୁ'' ସେ ମନେରଖି ଦେଶ ସେବାରେ ନିଜ ଜୀବନକୁ ବାଜି ଲଗାଇ ଦେଲେ । ସେ ଆମ ଭିତ୍‌ରେ ଆଉ ନାହାନ୍ତି ।

ସେ ଥିଲେ ପୁରୁଷ ସିଂହ । କାହାକୁ ସେ ଭୟ କରୁନଥିଲେ । ବିଦେଶୀ ଶାସନକୁ ସେ କରୁଥିଲେ ଘୋର ବିରୋଧ । ଦେଶର ସମ୍ମାନ ପାଇଁ ତାଙ୍କ ପ୍ରାଣ କାନ୍ଦୁଥିଲା । ସେ ଭାରତ ମାତାର ଜଣେ ସୁଯୋଗ୍ୟ ସନ୍ତାନ । ତାଙ୍କ ପରି କିଏ ହେବ ? ପଞ୍ଜାବ କେଶରୀ ଲାଲା ଲାଜପତ ରାୟଙ୍କ ଜନ୍ମ- ୧୮୬୫-ଜଗରାଓଁ (ପଞ୍ଜାବ) ଠାରେ । ପରଲୋକ ଘଟିଥିଲା ତା. ୧୭.୧୧.୧୯୨୮ ରିଖ ଲାହୋର (ପାକିସ୍ଥାନ) ଠାରେ ।

*** *** ***



# ମୂଲିଆପୁଅ ରାଷ୍ଟ୍ରପତି

ଦୁଇ ଶହ ବର୍ଷ ତଳର କଥା । ଆମେରିକାର ଗୋଟିଏ ପଲ୍ଲୀ ଗାଁ । ଏଇଠି ରହୁଥିଲେ ଜଣେ ଗରିବ ଲୋକ । ନାଁ ଟି ତାଙ୍କର ଥୋମାସ ଲିଙ୍କନ୍ । ସେ ପରିବାର ଚଳାଉଥିଲେ କାଠକାମ କରି । ଘରେ ତିନି ତିନିଟା ଛୁଆ ଆଉ ରୋଗୀଣା ସ୍ତ୍ରୀ । ବହୁତ ପରିଶ୍ରମ କରିବାକୁ ପଡେ । ବଡପୁଅ ଆବ୍ରାହମ ଡାକ ନାଁ 'ଆବେ' । ଆବେ ଥିଲେ ବାପାଙ୍କ ଦୁଃଖସୁଖର ସାଥୀ । ଆବେ ବାହାରକାମରେ ବାପାଙ୍କୁ ଓ ଘରକାମରେ ମା'ଙ୍କୁ ସାହାଯ୍ୟ କରନ୍ତି । ତା'ରି ଭିତରେ ପାଠପଢା ଆଉ ସବୁକଥା ।

ଆବେ ଦଶବର୍ଷ ହୋଇଥିବା ବେଳେ ମା' ଭୀଷଣ ରୋଗରେ ପଡିଲେ । କିଛି ଦିନ ପରେ ଚାଲିଗଲେ ଆରପାରିକି । ଆବେ ଆଉ ତିନି ଭାଇ ଭଉଣୀ ଅନାଥ ହୋଇଗଲେ । ପିଲାମାନଙ୍କ କଥା ବୁଝିବା ପାଇଁ ଥୋମାସ୍ ବିବାହ କଲେ ଆଉଥରେ । ଘରକୁ ନୂଆ ମା' ଆସିଲେ । ପିଲାମାନେ ଡରିଗଲେ । ସାବତ ମା' ତ କାଳେ ହଇରାଣ ହରକତ କରିବେ । ହେଲେ ନୂଆ ମା' ପିଲାଙ୍କୁ ବଡ ଆଦର କଲେ । ପିଲାମାନେ କେମିତି ପାଠଶାଠ ପଢି ଭଲ ମଣିଷ ହେବେ, ସେ କଥା ସ୍ୱାମୀ ଥୋମାସଙ୍କୁ କହିଲେ ।

ହେଲେ ଥୋମାସ ପିଲାଙ୍କ ପାଠ ପଢା କଥାରେ ମନ ଦେଲେ ନାହିଁ । ବରଂ କହିଲେ, ପାଠ ପଢେଇବା ପାଇଁ ମୋ' ପାଖରେ ଧନ ନାହିଁ । ସେମାନଙ୍କ ପାଠ ପଢା ଏତିକିରେ ଡୋରି ବନ୍ଧା ଯାଉ ।' ନୂଆ ମା'ଙ୍କର ଏକାଜିଦ୍ ପିଲାଏ ପଢିବେ । ଶେଷରେ ପିଲାଏ ପାଠଶାଳାକୁ ଗଲେ । ଆବେ ଯେଉଁଠାରେ ପାଠ ଛାଡିଥିଲେ ସେଇ ଶ୍ରେଣୀରେ ଯାଇ ନାଁ ଲେଖିଲେ । ଆବେ ଥିଲେ ବଡ ବୁଦ୍ଧିଆ । ବର୍ଷକ ଭିତରେ ସେ ବହୁତ ପାଠ ପଢିଗଲେ । ଅନେକ କଥା ଜାଣିଗଲେ । ନୂଆ ନୂଆ ବହି ପଢିବା ପାଇଁ ତାଙ୍କର ଆଗ୍ରହ ହେଲା ! ଜୀବନୀ ବହି ପଢିବା ପାଇଁ ସେ ଭଲ ପାଇଲେ । ଆବେଙ୍କର ଥିଲେ ଜଣେ ଶିକ୍ଷକ । ତାଙ୍କର ନାମ ଏଣ୍ଡ୍ର କ୍ରାଫର୍ଡ । ତାଙ୍କ ପାଖରେ ଥାଏ ବହୁତ ବହି । ବହିଗୁଡିକୁ ସେ ଭଲଭାବରେ ସଜାଇ ସାଇତି ରଖିଥାଆନ୍ତି । ଆବେଙ୍କର ଭଲ ନାଁ ଆବ୍ରାହମ୍ ।

ଦିନେ ଆବ୍ରାହମଙ୍କ ନଜର ପଡିଲା ଗୁରୁଜୀଙ୍କ ଥାକରେ ଥିବା 'ଜର୍ଜ ୱାଶିଂଟନଙ୍କ ଜୀବନୀ' ବହି ଉପରେ । ଜର୍ଜ ୱାଶିଂଟନ ହେଉଛନ୍ତି ଆମେରିକାର ପ୍ରଥମ ରାଷ୍ଟ୍ରପତି । ସେଇ ବହିଟି ପଢିବା ପାଇଁ ତାଙ୍କର ବଡ ଆଗ୍ରହ ହେଲା । ସେ ବଡ ବିନୟ ହୋଇ ଗୁରୁଜୀଙ୍କୁ ବହିଟି ମାଗିଲେ କେବଳ ଦିନକ ପାଇଁ । କ୍ରାଫର୍ଡ ବଡ ବହିପ୍ରେମୀ । ସେ ବହିକୁ ଜୀବନ ଠାରୁ ଅଧିକ ଭଲ ପାଆନ୍ତି । କାହାକୁ ବହି ଦିଅନ୍ତି ନାହିଁ । ହେଲେ ଛାତ୍ର ଆବ୍ରାହମର ଆଗ୍ରହ ଭାଙ୍ଗି ପାରିଲେ ନାହିଁ । ବହିଟିକୁ ଥାକରୁ ବାହାର କଲେ । ଦେବା ଆଗରୁ କହିଲେ, "ଦେଖ ଆବେ ! ମୁଁ ବହିକୁ ଖୁବ୍ ଯତ୍ନରେ ରଖେ । ତୁମେ ସେହିପରି ଯତ୍ନରେ ବହିଟି ପଢି ସାରି ମୋତେ ଆସନ୍ତା କାଲି ସକାଳେ ଆଣି ଫେରାଇ ଦେବ ।"

ବହିଟି ପାଇ ଆବ୍ରାହମଙ୍କ ଆନନ୍ଦ କହିଲେ ନସରେ । ଘରକୁ ଆସିଲେ । ବହିଟିକୁ ପଢିବାରେ ଲାଗିଲେ । ବହିପଢିବା ବେଳେ ସେ ଭୋକ ଶୋଷ ସବୁ ଭୁଲିଗଲେ । ବହିପଢା ଶେଷ ହେଲା ରାତି ଅଧବେଳକୁ । ବହିଟିକୁ ଝରକା ପାଖରେ ରଖି ସେ ଶୋଇ ପଡିଲେ । ସକାଳ ହେଲା । ସେ ଦେଖିଲେ ବହି ନାହିଁ । ବହୁତ ଖୋଜିଲେ । ଦେଖିଲେ ଝରକାବାଟେ ବହିଟି ତଳକୁ ଖସିପଡିଛି । ରାତିରେ କେତେବେଳେ ବର୍ଷା ହୋଇ ବହିଟି ପୂରା ଭିଜି ଯାଇଛି । ଆବ୍ରାହମଙ୍କ ହାଲୁକା ଶୁଖିଗଲା । ସେ ଦୁଃଖରେ ଭାଙ୍ଗିପଡିଲେ । ବହିଟି ସେହିପରି ଧରି ଯାଇ ଗୁରୁଜୀଙ୍କ ପାଖରେ ପହଞ୍ଚିଲେ ।

ବହିର ଅବସ୍ଥା ଦେଖି ଗୁରୁଜୀଙ୍କ ରାଗ ପଞ୍ଚମକୁ ଉଠିଗଲା । ତାଙ୍କ ରାଗ ଦେଖି ଆବ୍ରାହମ କାନ୍ଦି ପକାଇଲେ । ଗୁରୁଜୀ କହିଲେ, "ଆରେ ! କାନ୍ଦୁଛ କ'ଣ ? ମୁଁ ଯାହା ଭାବିଥିଲି ତାହାହିଁ ହେଲା । ଏବେ କୁହ ମୁଁ ତୁମକୁ କି ଦଣ୍ଡଦେବି ?" ଆବ୍ରାହମ କହିଲେ, "ଗୁରୁଜୀ ମୁଁ ଏଥିପାଇଁ ଲଜ୍ଜିତ ।" ଏହାପରେ ଗୁରୁଜୀ ପୁଣି ଭୀଷଣ ଭାବରେ ରାଗିଯାଇ କହିଲେ, "ତୁମକୁ ବହିର ପୂରାଦାମ ଦେବାକୁ ହିଁ ହେବ । ତୁମକୁ ଛାଡିବି ନାହିଁ ।" ଆବ୍ରାହମ କାନ୍ଦି କାନ୍ଦି କହିଲେ, "ଗୁରୁଜୀ ! ମୁଁ ଗରିବ ପିଲା । ଏତେ ଟଙ୍କା ପାଇବି କୋଉଠୁଁ ?" ଗୁରୁଜୀ କହିଲେ, "ତୁମ ପାଖରେ ପଇସା ନଥିଲେ, ତୁମ ବାପାଙ୍କୁ କହ – ମୋ ଜମିରେ ଚାରିଦିନ ଆସି କାମ କରି ଦେଇ ଯିବେ ।"

ବାପାଙ୍କ ନାଁ ଶୁଣି ଆବ୍ରାହମ ଗୁରୁଜୀଙ୍କୁ କହିଲେ, "ମୋ ବାପା ଏ କଥା ଜାଣିଲେ, ପିଟି ପିଟି ମୋ ଦେହରୁ ଛାଲ ଉତାରି ଦେବେ । ଯଦି ଆପଣ ଆଦେଶ ଦେବେ ମୁଁ ଯାଇ ଆପଣଙ୍କ ବିଲରେ ଚାରିଦିନ କାମ କରିବି ।" ଗୁରୁଜୀ କହିଲେ 'ଠିକ୍ ଅଛି ତୁମେ ଯାଅ ମୋ ବିଲରେ କାମ କର ।" ଗୁରୁଜୀଙ୍କ କଥା ଶୁଣି ଆବ୍ରାହମ ଭୟ ଓ ଆନନ୍ଦ ମିଶା ସ୍ୱରରେ କହିଲେ, ''ଗୁରୁଜୀ ! ତେବେ କ'ଣ ଏ ବହିଟି ମୋର ହୋଇଯିବ ?" ଗୁରୁଜୀ କହିଲେ, "ହଁ, ହଁ, ତା ପରେ ବହିଟି ତୁମର ପୂରାପୂରି ହୋଇଯିବ ।" ଏତିକି କଥା ଶୁଣିବା ପରେ ଆବ୍ରାହମଙ୍କ ଖୁସି ଓ ଆନନ୍ଦର ସୀମା ରହିଲା ନାହିଁ । ସେ ଆନନ୍ଦ ମନରେ ଗୁରୁଜୀଙ୍କ ବିଲରେ କାମ କଲେ । ଶେଷ ଦିନ ଗୁରୁଜୀ ଆବ୍ରାହମଙ୍କ ହାତକୁ ବହିଟି ବଢାଇ ଦେଲେ ।

ଆବ୍ରାହମ ବହିଟି ଧରି ଘରକୁ ଆସିଲେ । ବହିଟିକୁ ବାରମ୍ବାର ମୁଣ୍ଡରେ ଲଗାଇଲେ । ମନକୁ ମନ କହିଲେ " ମୋ ପରିଶ୍ରମ ବଳରେ ମୁଁ ଏଇ ବହିଟି ପାଇଛି । ଏଇ ବହିଟି ମୋର । ମୋ ନିଜର । ଅତି ଆପଣାର ।" ଏହାପରେ ଅନେକଥର ଆବ୍ରାହମ ବହିଟକୁ ଏ ମୁଣ୍ଡରୁ ସେ ମୁଣ୍ଡଯାଏ ପଢିବାରେ ଲାଗିଲେ । ତାଙ୍କ ମନ ଖୁସି ହୋଇ ଗଲା । ଜର୍ଜ ଓ୍ୱାସିଂଟନଙ୍କ ଜୀବନରେ ସେ ଅନୁପ୍ରାଣିତ ହେଲେ । ସେ ହୋଇଗଲେ ବଡ । ଖୁବ୍ ବଡ । ଆମେରିକାର ରାଷ୍ଟ୍ରପତି ପଦରେ ବସିଲେ । ତାଙ୍କର ପୂରାନାମ, 'ଆବ୍ରାହମ ଲିଙ୍କନ୍' । ତାଙ୍କର ଚେଷ୍ଟାରେ ଆମେରିକାରୁ ଦାସତ୍ୱପ୍ରଥା ଲୋପ ପାଇଥିଲା ।

*** 

## Abraham Lincoln



- Born on February 12, 1809
- On April 12, 1832 he enlisted in New Salem's local militia.
- August 1832- entered in political race for a seat in the Illinois General Assembly. He lost.
- 1834-1840: Was elected 4 times for Illinois General Assembly
- 1846:elected to a seat in the United States House of Representatives
- 1854: Gave Speech a Peoria
- 1858: Lincoln- Douglas debates



# ଗରିବଘରର ପୁଅ ପ୍ରଧାନମନ୍ତ୍ରୀ

ବାରଣାସୀର ହରିଶ୍ଚନ୍ଦ୍ର ବିଦ୍ୟାଳୟ । ଦିନକର କଥା । ସେଦିନ ସ୍କୁଲର ଖେଳଛୁଟି ବେଳ । ପିଲାମାନେ କିଏ କ'ଣ କିଣାକିଣି କରି ଆନନ୍ଦରେ ଖାଇ ଡିଆଁ ମାରୁଛନ୍ତି । ହେଲେ ଗୋଟିଏ ପିଲା ନିରବରେ ଗଛ ମୂଳରେ ଠିଆ ହୋଇଛି । ଏତିକିବେଳେ ଶ୍ରେଣୀର ଶିକ୍ଷକ ଆସି ପିଲା ପାଖରେ ପହଞ୍ଚିଲେ । ପିଲା ପିଠିରେ ହାତ ବୁଲାଇ ବୁଲାଇ ସ୍ନେହବୋଳା କଣ୍ଠରେ କହିଲେ, "ତୁମେ କାହିଁକି କିଛି ଖାଉ ନାହିଁ ?" 'ମୁଁ କିଛି ଖାଏ ନାହିଁ । ଘରୁ ଖାଇକି ଆସିଥାଏ । ପୁଣି ସ୍କୁଲରୁ ଘରକୁ ଫେରି ଯାହା କିଛି ଖାଏ ।' ପିଲାଟି ଉତ୍ତର ଦେଲା ।

ଦୟାଳୁ ଶିକ୍ଷକ ପିଲାଟିର ମନକଥା ଜାଣିପାରିଲେ । କିଛି ବାରମଜା କିଣି ପିଲାଟିର ହାତରେ ଦେଲେ । ପିଲାଟି କୃତଜ୍ଞତାର ସହ ଶିକ୍ଷକଙ୍କ ଆଡକୁ ଅନେକ ରହିଲା । ଆଉ ଦିନକର କଥା । ସେଦିନ ସେହି ଶିକ୍ଷକ ଶ୍ରେଣୀରେ ପିଲାମାନଙ୍କୁ କହିଲେ- "ଆସନ୍ତାକାଲି ଆମେ ସମସ୍ତେ ମେଳା ଦେଖିବାକୁ ଯିବା । ତୁମେମାନେ କାଲି ଆସିଲାବେଳେ ଅଣେ ଲେଖାଏଁ ପଇସା ଘରୁ ଆଣିକରି ଆସିବ ।

ପରଦିନ ମେଳା ଦେଖିବାକୁ ସବୁ ପିଲା ବାହାରିଲେ । ହେଲେ ସେଇ ପିଲାଟି ମେଳା ଦେଖିଯିବାକୁ ମନାକଲା । କହିଲା- "ମେଳା ଦେଖି ଯିବାକୁ ମୋ' ମନ ହେଉନାହିଁ ।" ଶିକ୍ଷକ କହିଲେ, "କାହିଁକି ? ତୁମେ କ'ଣ ପଇସା ଆଣି ନାହଁ ।" ପିଲାଟି ନିରବ ରହିଲା । ଶିକ୍ଷକ ନିଜେ ତା' ପକେଟରେ ହାତ ପୂରେଇ ଦେଖିଲେ ପିଲାଟିର ପକେଟରେ ଅଛି ମାତ୍ର ଗୋଟିଏ ପଇସା ।

ପରଦିନ ବିଦ୍ୟାଳୟ ଛୁଟି ହେଲା । ଶିକ୍ଷକ ପିଲାଟିକୁ ନିଜ ଘରକୁ ଡାକିନେଲେ । ପିଲା ବିଷୟରେ ସବୁକଥା ବୁଝିଲେ । ଜାଣିଲେ । ପିଲାଟି ଦେଢବର୍ଷର ହୋଇଥିବାବେଳେ ତା'ର ବାପା ମରି ଯାଇଥିଲେ । ସେଇଦିନଠୁ ଶିକ୍ଷକ ପିଲାଟିକୁ ନିଜ ପୁଅ ପରି ନିଜ ଘରକୁ ନେଇ ଆସନ୍ତି । ସନ୍ଧ୍ୟାବେଳେ ତାକୁ ତା'ଘରକୁ ପଠାଇ ଦିଅନ୍ତି । ଦିନେ ପିଲାଟି ଶିକ୍ଷକଙ୍କର ପିଲାଙ୍କୁ ଟିଉସନ କରିବା ପାଇଁ ନିଜଆଡୁ କହିଲା । ଶିକ୍ଷକ ପିଲାଟିର କଥାରେ ରାଜିହେଲେ । ଗୁରୁ ଛାତ୍ରଙ୍କ ସଂପର୍କ ଦିନକୁ ଦିନ ନିବିଡରୁ ନିବିଡତର ହେଲା ।

ମାସ ଶେଷରେ ଗୁରୁମା କିଛି ପଇସା ଆଣି ପିଲାଟିର ହାତରେ ଦେଇ କହିଲେ, "ଏହାକୁ ନିଅ । ଏ ହେଉଛି ତୁମର ପରିଶ୍ରମର ଫଳ । ହେଲେ ସ୍ୱାଭିମାନୀ ବାଳକ ସେଇ ପଇସାକୁ ଗ୍ରହଣ କଲା ନାହିଁ । ସେ କହିଲା ନିଜର ଭାଇ ଭଉଣୀଙ୍କୁ ପଢାଇବା ପାଇଁ କ'ଣ ପାରିଶ୍ରମିକ ନିଆଯାଏ ? ଗୁରୁମା ଓ ଗୁରୁ ପିଲାଟିର ମୁହଁରୁ ଏପରି କଥା ଶୁଣି ଅବାକ୍ ହୋଇଗଲେ ।

ଆଉ ଦିନକର କଥା । ଏ ପିଲା ଥରେ ସାଙ୍ଗସାଥିଙ୍କ ମେଳରେ ଫୁଲ ତୋଳିବା ପାଇଁ ଗୋଟିଏ ବଗିଚାରେ ଯାଇ ପହଂଚିଲା । ସାଙ୍ଗ ପିଲାମାନେ

ଫୁଲ ତୋଳି ନିଜ ନିଜ ମୁଣିରେ ପୂରାଇଲେ । ଏଇ ପିଲାଟା ଖୁବ୍ କମ୍ ଉଚ୍ଚତାର ଓ ଦୁର୍ବଳ । ଗଛକୁ ତା'ର ହାତ ପାଇଲା ନାହିଁ । ଏତିକିବେଳେ ମାଳୀ କେଉଁଠି ଥିଲା ଆସି ପହଞ୍ଚିଗଲା । ଅନ୍ୟ ପିଲାମାନେ ଯିଏଯୁଆଡେ ଖସି ଚାଲିଗଲେ । ହେଲେ ଏଇ ପିଲାଟି ମାଳୀ ହାତରେ ଧରାପଡିଲା । ମାଳୀ ପିଲାଟିକୁ ଖୁବ୍ ଜୋରରେ ପିଟିଲା । ପିଲାଟି ବିକଳରେ କହିଲା, "ମୋତେ ଏମିତି ମାରନାହିଁ । ମୋର ବାପା ନାହାନ୍ତି ।" ପିଲାର କଥା ଶୁଣି ମାଳୀ ଶାନ୍ତ ପଡିଗଲା । ପୁଣି ତେଢା କରି କହିଲା " ବାପା ନଥିଲେ କ'ଣ ହେଲା । ନିଜେ ବୁଝିବିଚାରି ଚାଲ । ନିଜ ଦାୟିତ୍ୱ ନିଜେ ବୁଝ ।"

ମାଳୀର ଏହି କଥା ପଦକରେ ପିଲାର ମନରେ ଘୋର ପରିବର୍ତ୍ତନ ଆଣିଲା । ସେ ସେହିଦିନ ଶପଥ କଲା – 'ଅନ୍ୟର କ୍ଷତି ହେବା ଭଳି କେବେ କୌଣସି କାମ କରିବି ନାହିଁ । ତା'ପରେ ଧୀରେ ଧୀରେ ସେହି ପିଲା ନିଜକୁ ଠିକ୍ ବାଟରେ ଗଢିତୋଳିଲା । ସେ ବଡ ହୋଇ ଭାରତଛାଡ ଆନ୍ଦୋଳନରେ ଯୋଗଦାନ କଲେ । ଶେଷରେ ସ୍ୱାଧୀନ ଭାରତର ବିଧାୟକ, ସାଂସଦ, ରାଜ୍ୟର ମନ୍ତ୍ରୀ, କେନ୍ଦ୍ର ମନ୍ତ୍ରୀ ଓ ଶେଷରେ ହେଲେ ଭାରତର ପ୍ରଧାନମନ୍ତ୍ରୀ ।

ଏହି ପିଲା କିଏ ଜାଣିଛ ? ଏହି ପିଲା ବଡହୋଇ ସ୍ୱାଧୀନ ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ହୋଇଥିଲେ । ତାଙ୍କର ଡାକନାମ 'ନନ୍ହେ' ଆଉ ଭଲ ନାଁ ହେଲା 'ଲାଲ୍ ବାହାଦୁର ଶାସ୍ତ୍ରୀ' । ସେ ଦେଇଥିଲେ 'ଜୟ ଜବାନ, ଜୟ କିଷାନ' ଧ୍ୱନି । ଏହା ଆଜି ଭାରତର ଜାତୀୟ ସ୍ଲୋଗାନରେ ପରିଣତ ହୋଇଛି ।

ଲାଲ୍ ବାହାଦୁର ଶାସ୍ତ୍ରୀ ୧୯୦୦ ମସିହା ଅକ୍ଟୋବର ଦୁଇ ତାରିଖରେ ଉତ୍ତର ପ୍ରଦେଶର ମୋଗଲସରାଇର ଏକ କାୟସ୍ଥ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କ ପିତା ଥିଲେ ଜଣେ ଶିକ୍ଷକ । ତାଙ୍କ ପିତାଙ୍କ ନାମ ସାରଦା ପ୍ରସାଦ । ମାତାଙ୍କ ନାମ ରାମଦୁଲାରୀ ଦେବୀ । ତାଙ୍କୁ ପିଲାଦିନେ ସମସ୍ତେ 'ନନ୍ହେ' ବୋଲି ଡାକୁଥିଲେ ।

ନନ୍ହେ ତିନିମାସର ହୋଇଥିବା ବେଳେ ବାପ ମା'ଙ୍କ ସଙ୍ଗରେ ଯାଇଥିଲେ ପ୍ରୟାଗ, ମକର ସଂକ୍ରାନ୍ତିରେ ହେଉଥିବା ଗଙ୍ଗାସାଗର ମେଳା ଦେଖିବାକୁ । ଲୋକ

ଗହଳିରେ ଠେଲା ପେଲା ଭିତରେ ସେ ମା' କୋଳରୁ ଛିଟିକି ଯାଇ ଗୋଟିଏ ଲୋକର ଟୋକେଇ ଭିତରେ ପଡିଗଲେ । ପୁଅକୁ ହରାଇ ମାତାପିତା ଦୁହେଁ ମନଦୁଃଖରେ କରି ପୋଲିସରେ ଖବର ଦେଲେ । ହେଲେ ପୁଅ ମିଳିଲା ନାହିଁ । ସେମାନେ ମନ ଦୁଃଖରେ କାଳ କାଟୁଛନ୍ତି- ହଠାତ୍ ଦିନେ ପୋଲିସ 'ନନ୍ହେ'କୁ ଧରି ତାଙ୍କ ଘରେ ଆସି ପହଞ୍ଚିଲେ । ପୁଅକୁ ଦେଖି ବାପା ମା'ଙ୍କ ଆନନ୍ଦର ସୀମା ରହିଲା ନାହିଁ ।

ଲାଲ୍ ବାହାଦୂରଙ୍କ ପିତା ଥିଲେ ଜଣେ ସ୍କୁଲ ଶିକ୍ଷକ । ନନ୍ହେକୁ ଦେଢବର୍ଷ ହୋଇଥିବା କାଳରେ ତାଙ୍କ ପିତାଙ୍କର ପରଲୋକ ଘଟିଲା । ଫଳରେ ଲାଲ୍ ବାହାଦୂର ମା'ଙ୍କ ସହିତ ଅଜା ଘରକୁ ଚାଲି ଆସିଲେ । ସେ ଅଜାଙ୍କ ତତ୍ତ୍ୱାବଧାନରେ ରହିଲେ । ଦୈବଯୋଗକୁ ତାଙ୍କର ଚାରିବର୍ଷ ହୋଇଥିବା ବେଳେ ଅଜା ଚାଲିଗଲେ ଆରପାରିକୁ । ଚାରିବର୍ଷ ବୟସରେ ତାଙ୍କର ପାଠପଢା ଆରମ୍ଭ ହେଲା । କାୟସ୍ଥ ବଂଶର ପରମ୍ପରା ଅନୁଯାୟୀ ମୌଲବୀଙ୍କ ପାଖରେ ତାଙ୍କର ଶିକ୍ଷା ଆରମ୍ଭ ହେଲା । ସେ ମୌଲବୀଙ୍କ ପାଖରୁ ଉର୍ଦ୍ଦୁ ଓ ପାର୍ସୀ ପଢିଲେ । ସ୍କୁଲରେ ଇଂରାଜୀ ପଢିଲେ ।

୧୯୨୧ ମସିହାର କଥା । ଲାଲ୍ ବାହାଦୂର ହାଇସ୍କୁଲରେ ପଢୁଥିଲେ । ଏତିକିବେଳେ ସେ ମଦ ଦୋକାନ ଓ ବିଦେଶୀ ଲୁଗା ଦୋକାନ ଆଗରେ ପିକେଟିଂ କରି ଗିରଫ ହେଲେ । ତାଙ୍କୁ ସ୍କୁଲରୁ ବାହାର କରି ଦିଆଗଲା । ସେ ମିର୍ଜାପୁର ଚାଲି ଆସି ତିଲକ ବିଦ୍ୟାଳୟରେ ପଢିଲେ । ସେଠାରୁ ମାଟ୍ରିକ ପାସ କଲେ । ତା ପରେ କାଶୀ ବିଦ୍ୟାପୀଠରେ ଦର୍ଶନ ଶାସ୍ତ୍ର ନେଇ ଚାରିବର୍ଷ ପଢିଲେ । ଶେଷ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ତାଙ୍କୁ ମିଳିଲା 'ଶାସ୍ତ୍ରୀ' ଉପାଧି । ଏହି ଦିନଠାରୁ ସେ ଲାଲ୍ ବାହାଦୂର ଶାସ୍ତ୍ରୀ ଭାବରେ ହେଲେ ପରିଚିତ ।

୧୯୨୮ ମସିହାରେ ଲାଲମଣି ଦେବୀଙ୍କ ସହ ତାଙ୍କର ବିବାହ ହେଲା । ତାଙ୍କ ଘରେ ଲାଲମଣି ଦେବୀଙ୍କ ନାମ ବଦଳାଇ 'ଲଳିତା ଦେବୀ' ବୋଲି ରଖିଲେ । ଶ୍ୱଶୁର ଘରୁ ସେ ଏକ ଟଙ୍କା ସହ ଯୌତୁକ ବାବଦକୁ ଗୋଟିଏ

ଚରଖା ଓ କିଛି ଖଦୀ ଗ୍ରହଣ କରିଥିଲେ । ସେ ରହିଲେ ଆହ୍ଲାବାଦରେ । ୧୯୩୦ରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଗିରଫ ହେଲେ । ୧୯୩୫ରେ ଉତ୍ତର ପ୍ରଦେଶ କଂଗ୍ରେସ ଦଳର ସଂପାଦକ ହେଲେ । ୧୯୩୭ ବିଧାନସଭା ନିର୍ବାଚନରେ ପ୍ରାର୍ଥୀ ହୋଇ ଏହ୍ଲାବାଦ ବିଧାନସଭା ଆସନରୁ ନିର୍ବାଚିତ ହେଲେ । ୧୯୪୨ ରେ ଲାଲ ବାହାଦୂର ଭାରତ ଛାଡ ଆନ୍ଦୋଳନରେ ଯୋଗଦେଇ ଗିରଫ ହେଲେ । ୧୯୪୬ ମସିହାରେ ନିର୍ବାଚନ ହେଲା । ଏଥର ପୁଣି ସେ ଏହ୍ଲାବାଦ ବିଧାନସଭା ଆସନରୁ ନିର୍ବାଚିତ ହେଲେ । ଏହାପରେ ଦେଶ ସ୍ୱାଧୀନ ହେଲା । ସେ ରାଜ୍ୟ ସଭାକୁ ନିର୍ବାଚିତ ହେଲେ । ନେହେରୁ ହେଲେ ପ୍ରଧାନମନ୍ତ୍ରୀ । ଶାସ୍ତ୍ରୀଜୀ ହେଲେ ରେଳ ବିଭାଗ ମନ୍ତ୍ରୀ । ୧୯୫୬ ମସିହାରେ ଗୋଟିଏ ବିରାଟ ରେଳ ଦୁର୍ଘଟଣା ଘଟିଲା । ଏଥିପାଇଁ ସେ ନିଜକୁ ଦାୟୀ କରି ମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ୧୯୫୭ ମସିହାରେ ସେ ପୁଣି ଥରେ ହେଲେ ପରିବହନ ମନ୍ତ୍ରୀ । ଘରୋଇ ବିଭାଗ ମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କର ବିୟୋଗ ଘଟିଲା । ଶାସ୍ତ୍ରୀଜୀ ହେଲେ କେନ୍ଦ୍ର ଘରୋଇ ବିଭାଗ ମନ୍ତ୍ରୀ । ୧୯୬୪ ମସିହା ମଇ ମାସ ୨୭ ତାରିଖ ବୁଧବାର ଦିନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ବିୟୋଗ ଘଟିଲା । ସେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ସେ ହେଲେ ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ।

୧୯୬୫ ମସିହାରେ ଦେଶର ପଶ୍ଚିମ ସୀମାନ୍ତ କିଛି ଅଂଚଳରେ ଅନ୍ୟାୟ ଭାବରେ ପାକିସ୍ତାନ ଭାରତ ଉପରେ ଆକ୍ରମଣ କଲା । ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀ ଦୃଢ ଭାବରେ ଘୋଷଣା କଲେ "ଶକ୍ତିର ଜବାବ୍ ଶକ୍ତିରେ ଦିଆଯିବ । ଅସ୍ତ୍ରର ଜବାବ ଅସ୍ତ୍ରରେ– ହିଁ ଦିଆଯିବ ।" ସେ ଭାରତୀୟ ସେନାଙ୍କୁ ପାକିସ୍ତାନର ଲାହୋର ପର୍ଯ୍ୟନ୍ତ ପଠାଇ ଦେଇଥିଲେ । ଶେଷରେ ପାକିସ୍ତାନ ଯୁଦ୍ଧ ବନ୍ଦ କରିବା ପାଇଁ ରାଜିହେଲା । ଋଷର ନେତା କୋସିଜିନ ଏଥିପାଇଁ ମଧ୍ୟସ୍ଥତା କଲେ । ତାସକେଣ୍ଟଠାରେ ଶାନ୍ତି–ଚୁକ୍ତି ପାଇଁ ବୈଠକ ବସିଲା । ଆଲୋଚନା ସଫଳ ହେଲା । ହେଲେ ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଆମ ଠାରୁ ଚିରଦିନ ପାଇଁ ବିଦାୟ ନେଲେ । ୧୯୬୬ ମସିହା ଜାନୁଆରୀ ୧୧ ତାରିଖ ଦିନ ତାସକେଣ୍ଟଠାରେ ତାଙ୍କର ହୃଦକ୍ରିୟା ଅଚଳ ହୋଇଗଲା । ସେ ଅମର ଧାମକୁ ଚାଲିଗଲେ । ସେ ମରି ବି ଆଜି ଅମର ।

***



# ଚଗଲା ପିଲାରୁ ସ୍ୱାମୀଜୀ

ପିଲାଟିର ଡାକ ନାଁ ବିଲେ । ବାପା ସେଦିନ ପୁଅକୁ ଡାକି ପଚାରିଲେ, "ବଡହେଲେ ତୁ କ'ଣ ହେବୁରେ ବିଲେ ?" "କଚୁଆନ ହେବି ବାବା ।" ବିଲେ ସଂଗେ ସଂଗେ ଉତ୍ତର ଦେଲା । ଓକିଲ ବିଶ୍ୱନାଥ ଦତ୍ତ, ପୁଅ ମୁହଁରୁ ଏମିତି କଥା ଶୁଣି ଆବାକ୍ ହୋଇଗଲେ । ସେ ଜଣେ ବେଶ୍ ଜଣାଶୁଣା ଲୋକ । ତାଙ୍କର ଖାତିରି କାହିଁରେ କେତେ । ଚାରିଆଡେ ନାଁ ଡାକ । ଆଉ ପୁଅ କହୁଛି କ'ଣ ନା, କଚୁଆନ୍ ହେବ । ଏକଥା ବି ସମସ୍ତେ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ।

ବିଲେ ତାର ସାଂଗସାଥୀଙ୍କୁ ନେଇ ଗୋଟିଏ ଦଳ ଗଢିଥାଏ । ସାଥୀ ପିଲାମାନେ ବିଲେକୁ କରିଥାଆନ୍ତି ଦଳପତି । ବିଲେର ଏପରିକଥା ଶୁଣି

ସାଥୀମାନେ ବି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ବିଲେକୁ ପଚାରିଲେ, "ତୁ ବଡହେଲେ କଚୁଆନ ମାନେ ଘୋଡାଗାଡି ଚାଳକ ହେବୁ ବୋଲି କ'ଣ କହୁଛୁ ? ବିଲେ ଚିଡିଯାଇ ଉତ୍ତର ଦେଲା, "କହିଲି ତ କ'ଣ ହେଲା ? ଆରେ ମୋର ଯାହା ଇଛା ନା ! ବାପା ଯେଉଁ ଘୋଡାଗାଡିରେ କଚେରି ଯାଉଛନ୍ତି ଦେଖିଛ, ଦେଖିଛ ତା'ର ଘୋଡା ଦି'ଟାକୁ ? ସେଇ ଘୋଡା ଦି'ଟା କେଡେ ବଳବାନ ! ଆଉ କେମିତି ଜୋରରେ ଦୌଡନ୍ତି ? ସେଇ ଘୋଡା ଦି'ଟାକୁ ଯିଏ ଚଳାଏ ତା'ର କ୍ଷମତା ଆଉ ଶକ୍ତି କ'ଣ କମ୍ ହେବା ଦରକାର ?" ଏ କଥା ଶୁଣି ବିଲେର ସାଥୀମାନେ ଚୁପ୍ ହୋଇଗଲେ । ସେମାନେ ମନେ ମନେ ଭାବିଲେ ଚଳାଇବା କ୍ଷମତା କ'ଣ ସମସ୍ତଙ୍କର ଥାଏ । ବିଲେ ଆମର ଏଇ ଦଳକୁ ଯେମିତି ଠିକ୍ ଭାବରେ ଚଳାଉଛି, ସତରେ ବିଲେପରି କିଏ ହେବ ?

ବିଲେ ତା'ର ସାଥୀମାନଙ୍କୁ ନେଇ ଖେଳେ 'ରାଜା-ଚୋର ଖେଳ' । ଏହି ଖେଳଟି ଭାରି ବଢିଆ ଖେଳ । ଏଇ ଖେଳରେ ବିଲେ ହୁଏ ରାଜା । ସେ ଡକାୟତମାନଙ୍କୁ ଧରି ଆଣେ । ଚୋରି କରିଥିବା ଯୋଗୁ ସେମାନଙ୍କୁ ଜେଲ ଦଣ୍ଡ ଦିଏ । ଆଉ ଡକାୟତ ସର୍ଦ୍ଦାରକୁ କହେ- "ଭଲ କାମ ନକରି ଡକାୟତ କରୁଛ ? ଦଳର ଲୋକଙ୍କୁ ଭଲ କଥା ନଶିଖାଇ ଏଇ ଖରାପ କାମ କରିବା ପାଇଁ ଶିଖାଉଛ ? ତୁମର ଦୋଷ ସବୁଠାରୁ ବେଶୀ । ସେଇ ଅପରାଧରେ ମୁଁ ତୁମକୁ ଫାଶୀ ହୁକୁମ୍ ଦେଲି ।" ବିଲେ ଖୁବ୍ ବଳବାନ୍ । କୁସ୍ତି ବକ୍ସିଂ ସବୁ ସେ ଘରେ ଶିଖେ, ଭଲ ଗୀତ ବି ବୋଲିପାରେ । ବଡ ଧର୍ମ ପରାୟଣ । ରାମାୟଣ, ମହାଭାରତର ଗପ ଶୁଣିବାକୁ ତାକୁ ଭାରି ଭଲ ଲାଗେ । ପିଲା ହେଲେ କ'ଣ ହେବ, ବଡ ବିଚାରବନ୍ତ । ସେ ସାହସୀ ଆଉ ନିର୍ଭୀକ ।

ତାଙ୍କ ସାଇ ମୁଣ୍ଡରେ ଥାଏ ଗୋଟିଏ ପୁରୁଣା ଚମ୍ପାଗଛ । ବିଲେ ସାଙ୍ଗପିଲାଙ୍କ ସହ ସେହି ଗଛରେ ଡାଳ ମାଙ୍କୁଡି ଖେଳେ । ଦୋଳି ଖେଳେ । କିଏ ଦିନେ ପ୍ରଚାର କରିଦେଲା, 'ସେଇ ଗଛରେ ଗୋଟିଏ ବ୍ରହ୍ମ ରାକ୍ଷସ ରହୁଛି । ଯିଏ ଗଛରେ ଚଢିବ ତା' ତଣ୍ଟି ଚିପି ଖାଇ ଦେବ ।' ଏକଥା ଶୁଣି ପିଲାମାନେ ଭୟରେ ସେଇ ଗଛ ପାଖକୁ ଆଉ ଗଲେନି । ହଠାତ୍ ଦିନେ ଦେଖିଲାବେଳକୁ

ବିଲେ ସେହି ଗଛରେ ଚଢି ଆନନ୍ଦରେ ହସି ହସି ଦୋଳି ଖେଳୁଛି । ଏକଥା ଦେଖି ତା' ସାଂଗମାନେ ତା' ପାଖକୁ ଦୌଡିଗଲେ । କହିଲେ, "କିରେ ବିଲେ ! ତୋର ବ୍ରହ୍ମରାକ୍ଷସକୁ କ'ଣ ଡର ନାହିଁ ।"

ବିଲେ ହସି ହସି କହିଲା "ଧେତ୍ ବୋକା ଗୁଡାକରେ ? ଆରେ ବ୍ରହ୍ମରାକ୍ଷସ ଥିଲେ କେତେବେଳୁ ମୋ ବେକ ମୋଡି ସାରନ୍ତାଣି ନା ନାହିଁ ?" ବିଲେ ସାହାସୀ ଓ ନିର୍ଭୀକ । ସେମିତି ଭୟଛାଡି ନିର୍ଭୀକ ହେବା ପାଇଁ ସାଥୀପିଲାଙ୍କୁ ଶିଖେଇଲା । କହିଲା, 'ଭାଇମାନେ । କେହି ଭୟ କର ନାହିଁ । ଶତ୍ରୁକୁ ରଗେଇ ଠିଆ କରେଇଦିଅ । ଦେଖିବ କେଡେ ମଜା ଲାଗିବ, ବିଲେ ପିଲାଦିନେ ସମସ୍ତଙ୍କୁ ଭଲ ପାଉଥିଲା । ଗରିବ ଦୁଃଖୀ ଲୋକ ଦେଖିଲେ ପାଖରେ ଯାହାଥାଏ ଦେଇଦିଏ । ଜାତିଭେଦ ମାନେନା । ଦିନେ ତାଙ୍କ ଘରେ ନୀଚଜାତିର ଲୋକଙ୍କ ପାଇଁ ଥିବା ହୁକାରୁ ଗୋଟିଏ ଟାଣୁଛି, ଏତିକିବେଳେ ବାପା ଆସି ପହଞ୍ଚିଗଲେ । କହିଲେ, 'କ'ଣ କରୁଛୁ ବାବା । ? ବିଲେ କହିଲା, "ବାବା ! ମୁଁ ଦେଖୁଛି, ମୋ ଜାତିଟା ଚାଲି ଯାଉଛି ନା ନାହିଁ ?" ଏ ଘଟଣା ଦେଖି ବାବା ସେଠାରୁ ଚୁପ ହୋଇ ଚାଲିଗଲେ । ବିଲେ ବଡ ହେଲେ । ଜଗତ୍ ବିଖ୍ୟାତ ସ୍ୱାମୀ ବିବେକାନନ୍ଦ ଭାବରେ ହେଲେ ପରିଚିତ ।

କୋଲକାତା ସହରର ସିମିଳିପଲ୍ଲୀରେ ୧୮୬୩ ମସିହା ଜାନୁଆରୀ ୧୨ ତାରିଖରେ ତାଙ୍କର ଜନ୍ମ । ମାତା ଭୁବନେଶ୍ୱରୀ ଦେବୀ ବଡ ଧାର୍ମିକ ଓ ଭକ୍ତପରାୟଣା ମହିଳା । ବିଲେର ପୂରାନାମ ନରେନ୍ଦ୍ର ନାଥ ଦତ୍ତ । ନରେନ୍ଦ୍ର ନାଥ ଷୋହଳ ବର୍ଷରେ ମାଟ୍ରିକ ପାସ୍ କରି ସ୍କଟିସ୍ ଚର୍ଚ୍ଚ କଲେଜରେ ବି.ଏ ପଢିଲେ । ଈଶ୍ୱରଙ୍କୁ ଜାଣିବା ପାଇଁ ଏହି ସମୟରେ ସେ ଆଗ୍ରହୀ ହୋଇ ଉଠିଲେ । ମହାପୁରୁଷ ରାମକୃଷ୍ଣ ପରମହଂସଙ୍କର ଶିଷ୍ୟ ହେଲେ । ଗୃହ ସଂସାରରେ ମନ ନବଳାଇ ପରିବ୍ରାଜକ ସନ୍ନ୍ୟାସୀ ହୋଇଗଲେ । ଭାରତ ସାରା ବୁଲିଲେ ଧର୍ମ, ଶାନ୍ତି ବାଟରେ ଚାଲିବା ପାଇଁ ଲୋକଙ୍କୁ ବୁଝାଇଲେ । ସଂଯମୀ, ଶାନ୍ତ, ସରଳ ଓ ବଳବାନ ହେବା ପାଇଁ ଯୁବକମାନଙ୍କୁ କହିଲେ । ତାଙ୍କ କଥା ଓ ବାଣୀ ଲୋକ ସହଜରେ ମାନିନେଲେ । ତାଙ୍କର ଜ୍ଞାନ ଦେଖି ତାଙ୍କୁ କିଏ ବିବିଦିଷାନନ୍ଦ

ତ କିଏ ସଚ୍ଚିଦାନନ୍ଦ ବୋଲି ସମ୍ବୋଧନ କଲେ । ହେଲେ ଖେତୁରୀର ମହାରାଜା ତାଙ୍କୁ 'ବିବେକାନନ୍ଦ' ବୋଲି ଗ୍ରହଣ କରିନେଲେ ।

ସ୍ୱାମୀ ବିବେକାନନ୍ଦ ନାମରେ ସେ ହେଲେ ପରିଚିତ । ଏହି ନାଁ ଟି ସମସ୍ତଙ୍କୁ ଭଲ ଲାଗିଲା । ସ୍ୱାମୀଜୀ ଆମେରିକା, ଫ୍ରାନ୍ସ ଓ ଇଂଲଣ୍ଡ ଆଦି ଦେଶ ଭ୍ରମଣ କଲେ । ବେଦାନ୍ତର ସାରବାଣୀ ସମସ୍ତଙ୍କୁ ଶୁଣାଇଲେ । ତାଙ୍କ ଭାଷଣ ଶୁଣି ସମସ୍ତେ ଖୁସିହେଲେ । ଆମେରିକାର ଚିକାଗୋ ଠାରେ ଧର୍ମସଭା ବସିଲା । ସେହି ସଭାରେ ପାଞ୍ଚ ସାତ ହଜାର ଲୋକ ଯୋଗ ଦେଲେ । ସ୍ୱାମୀଜୀ ଏହି ସଭାରେ ଯୋଗ ଦେଲେ । ସେ ତାଙ୍କ ଭାଷଣ ଆରମ୍ଭରେ 'ଆମେରିକାବାସୀ ଭଉଣୀ ଓ ଭାଇମାନେ' ବୋଲି ସମ୍ବୋଧନ କଲେ । ତାଙ୍କର ଏପରି ସମ୍ବୋଧନ ଶୁଣି ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କୁ ଅଭିନନ୍ଦନ ଜଣାଇ ଦୁଇ ମିନିଟ୍ କାଳ ତାଳି ମାଡ କଲେ । ସ୍ୱାମୀଜୀ ବହୁ ସମୟ ଧରି ଭାଷଣ ଦେଲେ ତାଙ୍କ ସୁଲଳିତ ଭାଷଣ ଶୁଣି ସମସ୍ତେ ମୁଗ୍ଧ ହୋଇଗଲେ । ସ୍ୱାମୀ ବିବେକାନନ୍ଦ ପୃଥିବୀ ବିଖ୍ୟାତ ହୋଇଗଲେ । ତାଙ୍କର ଅନେକ ଶିଷ୍ୟ ହେଲେ ବାହାର ଦେଶରେ । ହେଲେ ସେ ବେଶୀଦିନ ରହିପାରିଲେ ନାହିଁ । ୧୯୦୨ ମସିହା ଜୁଲାଇ ୪ ତାରିଖରେ ତାଙ୍କର ଦେହାନ୍ତ ହୋଇଗଲା । ତାଙ୍କ ଜନ୍ମଦିନକୁ ଆମେ ଦେଶର 'ଜାତୀୟ ଯୁବ ଦିବସ' ଭାବରେ ପାଳନ କରିଥାଉ । ସେ ଅମର, ଚିର ଅମର ।

*****



# ଭାରତର ବୁଲବୁଲ

ଛୋଟ ଝିଅଟିଏ । ନାଁ ତାର ସରୋଜିନୀ । ମନଦେଇ ପାଠ ପଢେ । ବାପା ଅଘୋରନାଥ ଚଟ୍ଟୋପାଧ୍ୟାୟ-ଜଣେ ବୈଜ୍ଞାନିକ ଓ ଦାର୍ଶନିକ । ମା ବରଦା ଦେବୀ ଜଣେ ଶିକ୍ଷିତା ଧର୍ମପ୍ରାଣା ମହିଳା । ବାପା ଝିଅକୁ ନିଜେ ପଢାନ୍ତି । ଦିନେ ସେ ଝିଅକୁ ଅଙ୍କ କଷି ଆଣିବାକୁ କହିଲେ । ହେଲେ ସେଦିନ ସରୋଜିନୀଙ୍କୁ ଅଙ୍କ କଷିବାକୁ କାହିଁକି ଭଲ ଲାଗିଲା ନାହିଁ । ସେ ଅଙ୍କ ଖାତାରେ ବସି ଇଆଡୁ ସିଆଡୁ କେତେ କଣ ଲେଖି ପକାଇଲା । ବାପା ଅଙ୍କ ଖାତା ଦେଖିବାକୁ ମାଗିଲେ । ସେ ଦେଖିଲେ- ଝିଅ ଅଙ୍କ କରିବା ବଦଳରେ ଖାତରେ କବିତା ଲେଖିଛି । ବାପା ବଡ ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ 'ଆରେ ମା ! ତୁ ଏ ସବୁ କାହାର କବିତା ଖାତାରୁ ଟିପୁଛୁ ?"

ମଥା ତଳକୁ କରି ସରୋଜିନୀ କହିଲା, "ବାବା ! ଏ ସବୁ ମୋ କବିତା । ମୁଁ ଅନ୍ୟ କାହା କ୍ୱବିତା କାହିଁକି ମୋ ଖାତାରେ ଟିପିବି ?" ଝିଅ କଥା ଶୁଣି ବାପା ବହୁତ ଖୁସି ହୋଇଗଲେ । ଝିଅକୁ ପ୍ରେରଣା ଦେଇ କହିଲେ, ଖୁବ୍ ଭଲ କବିତା ତୁ ଲେଖୁଛୁ । ଯାଆ ମା' ଆହୁରି କବିତା ଲେଖେ" । ବାପାଙ୍କ ଠାରୁ ପ୍ରେରଣା ପାଇ ଝିଅର କବିତା ଲେଖାରେ ଉତ୍ସାହ ବଢିଗଲା । ଅଳ୍ପଦିନ ଭିତରେ ସେ ଅନେକ କବିତା ଲେଖି ପକାଇଲା । ପାଠ ପଢାରେ ବି ମନଦେଇ ସ୍କୁଲରେ ଖୁବ୍ ଭଲ କଲା । ବାର ବର୍ଷ ବୟସରେ ସେ ମାଟ୍ରିକ ପାସ୍ କଲା । ଝିଅଟିର ନାଁ ସରୋଜିନୀ ।

ହେଲେ କ'ଣ ହେବ । ଝିଅଟା ଟିକିଏ ରୋଗିଣା । ହଠାତ୍ ରୋଗରେ ପଡିଗଲା । ବାପା ଡାକ୍ତର ଡାକିଲେ । ଡାକ୍ତର ସରୋଜିନୀକୁ ପରୀକ୍ଷା କରି କହିଲେ, "କିଛିଦିନ ପାଇଁ ଝିଅ ପାଠପଢା ଓ ଲେଖାଲେଖି ବନ୍ଦ କରି ଦେଉ । ତାପରେ ତା ଦେହ ଭଲ ହୋଇଯିବ ।" ଝିଅଟି ଚାରି ପାଞ୍ଚଦିନ ଗୁମ୍ ହୋଇ ବସିରହିଲା । ତାର ଦୁଇଦିନ ପରେ ସେ ତେରଶହ ଧାଡିର ଏକ ଇଂରାଜୀ କବିତା ଲେଖି ବାପାଙ୍କୁ ଆଣି ଦେଖାଇଲା । ପୁଣି ତାର ଏକ ସପ୍ତାହ ପରେ ସେ ଲେଖିଦେଲା ଦୁଇ ହଜାର ଧାଡିର ଏକ ଇଂରାଜୀ ନାଟକ । ଏହିପରି ଲେଖାଲେଖି କରିବାରୁ ଝିଅର ଦେହ ଆହୁରି ଭାଙ୍ଗିପଡିଲା ।

ବାପା ଅଘୋରନାଥ ବାବୁ ଝିଅକୁ ଗୋଟିଏ ଘରେ ପୂରେଇ କବାଟ କିଳିଦେଇ ରଖିଲେ । କୌଣସି କାମ କରିବାକୁ ଦେଲେ ନାହିଁ । ଖାତା, କାଗଜ, କଲମ ସେଇ ଘରେ ରଖିଲେ ନାହିଁ । କିନ୍ତୁ ସେଇ ଘରେ ଥାଏ କିଛି ବହି । ସରୋଜିନୀ ସେହି ସବୁ ବହି ବସି ପଢିବାରେ ଲାଗିଲା ।

ଏମିତି ଆଗରୁ ଆଉଥରେ ଅଘୋରନାଥ ବାବୁ ଝିଅ ସରୋଜିନୀକୁ ଗୋଟିଏ ଘରେ ପୂରେଇ କବାଟ କିଳି କିଛି ସମୟ ରଖିଥିଲେ । ସେତେବେଳେ ସରୋଜିନୀର ବୟସ ନ'ବର୍ଷ । ସରୋଜିନୀ ପରିବାରର ସମସ୍ତେ ଘରେ ଇଂରାଜୀରେ କଥାବାର୍ତ୍ତା ହୁଅନ୍ତି, କିନ୍ତୁ ସରୋଜିନୀ ଶୁଦ୍ଧ ଭାବରେ ଇଂରାଜୀ ଶବ୍ଦ ଉଚ୍ଚାରଣ କରିପାରିଲା ନାହିଁ । ଏଇଥିପାଇଁ ବାପା ତାକୁ କବାଟ କିଳି

ରଖିଦେଇଥିଲେ । ଯାହାହେଉ ସେହିଦନ ଠାରୁ ସରୋଜିନୀ ଶୁଦ୍ଧ ଭାବରେ ଇଂରାଜୀ ଶବ୍ଦ ଉଚ୍ଚାରଣ କରିପାରିଲା ।

ଏଇ ସରୋଜିନୀ ଗୋଟିଏ ସାଧାରଣ ଝିଅ ନୁହେଁ । ବୟସ ବଢ଼ିବା ପରେ ବି ସେ ସାଧାରଣ ନାରୀ ଭାବରେ ଜଣାଶୁଣା ନଥିଲେ । ସେ ଥିଲେ ଜଣେ ସୁନ୍ଦର କବୀ, ସମାଜ ସଂସ୍କାରକ, ସ୍ୱାଧୀନତା ସଂଗ୍ରାମୀ, ପ୍ରଥମ ମହିଳା ରାଜ୍ୟପାଳ । ତାଙ୍କ ବ୍ୟକ୍ତିତ୍ୱର ପଟ୍ଟାନ୍ତର ନାହିଁ । ସରୋଜିନୀ ୧୮୭୯ ମସିହା ଫେବୃୟାରୀ ତେର ତାରିଖ ଦିନ ହାଇଦ୍ରାବାଦ ସହରରେ ଜନ୍ମ ହୋଇଥିଲେ । ବାରବର୍ଷ ବୟସରେ ମାଟ୍ରିକ ପାସ୍ କରିବା ପରେ ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଯାଇଥିଲେ । ଉଣେଇଶ ବର୍ଷ ବୟସରେ ତାଙ୍କର ବାହାଘର ହେଲା ଗୋବିନ୍ଦ ରାଜୁଲୁ ନାଇଡୁ ନାମକ ଜଣେ ଡାକ୍ତରଙ୍କ ସହ । ଫଳରେ ସେ ସରୋଜିନୀ ନାଇଡୁ ନାମରେ ପରିଚିତ ହେଲେ ।

ସରୋଜିନୀ ନାଇଡୁ ଥିଲେ ଜଣେ ସୁନ୍ଦର କବୀ । ଇଂରାଜୀ ଭାଷାରେ ସେ ରାଶି ରାଶି କବିତା ଲେଖିଯାଇଛନ୍ତି । ସେ ସବୁ କବିତା ସାରା ବିଶ୍ୱରେ ଚହଳ ପକାଇପାରିଛି । ତେଣୁ ତାଂକୁ କୁହାଯାଏ ଭାରତର 'ନାଇଟିଙ୍ଗ୍‌ଲ ବା ଭାରତର ବୁଲ୍ ବୁଲ' । ସେ ପ୍ରଥମେ କଂଗ୍ରେସରେ ଯୋଗଦାନ କରି ୧୯୨୫ରେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ହେଲେ । ୧୯୪୨ ମସିହା ଭାରତ ଛାଡ ଆନ୍ଦୋଳନରେ ଯୋଗଦେଇ ପୁନାର ଆଗା ଖାଁ ପାଲେସରେ ବା ଓ ବାପୁଙ୍କ ସହ ଜେଲରେ ରହିଲେ । ଦେଶ ସ୍ୱାଧୀନ ହେଲା । ସେ ହେଲେ ଉତ୍ତର ପ୍ରଦେଶର ରାଜ୍ୟପାଳ । ପ୍ରଥମ ମହିଳା ରାଜ୍ୟପାଳ । ହିନ୍ଦୁ-ମୁସଲମାନ ସଂସ୍କୃତିର ସେ ଥିଲେ ସଂପର୍କର ସେତୁ । ମହିଳାଙ୍କ ମର୍ଯ୍ୟାଦା ବୃଦ୍ଧି ଓ ବିକାଶ ପାଇଁ ସେ ଅନେକ କାମ କରିଯାଇଛନ୍ତି । ସେ ଆଉ ନାହାନ୍ତି । ୧୯୪୯ ମସିହା ମାର୍ଚ୍ଚ ୨ ତାରିଖରେ ତାଙ୍କର ପରଲୋକ ହୋଇଯାଇଛି । ତାଙ୍କ ପରି ନାରୀନେତ୍ରୀ ଦେଖିବାକୁ ବିରଳ ।

*** *** ***



# ବିଜୟୀ ବାଳକ

ପ୍ରାୟ ଦେଢଶହ ବର୍ଷ ତଳର କଥା । ସେତେବେଳେ କଟକ ସରକାରୀ ଜିଲ୍ଲା ସ୍କୁଲରେ ପଢୁଥିଲେ ଜଣେ ଓଡ଼ିଆ ବାଳକ । ସ୍କୁଲରେ ଓଡ଼ିଆ ପିଲାଙ୍କ ସଂଖ୍ୟା ଥିଲା ବହୁତ କମ୍ । ବେଶୀ ଥିଲେ ଅଣଓଡ଼ିଆ ବଙ୍ଗାଳି ପିଲା । ବଙ୍ଗାଳି ପିଲାମାନେ ଇଂରାଜୀ ଷ୍ଟାଇଲ୍‌ର ପେଣ୍ଟ କୁରୁତା ପିନ୍ଧି ସ୍କୁଲକୁ ଆସୁଥିଲେ । ଏଇ ଓଡ଼ିଆ ବାଳକଟି ଆସିଥିଲେ ନିପଟ ମଫସଲ ଗାଁରୁ । ସେ ପିନ୍ଧୁଥିଲେ ଗାଁର ହାତବୁଣା ଲୁଗା ଆଉ 'ମିରିଯାଇ' । ତାଙ୍କ ମୁଣ୍ଡରେ ଲମ୍ବଚୁଟି । ତାଙ୍କ ଲମ୍ବଚୁଟି ଦେଖି ବଙ୍ଗାଳି ପିଲାଏ ତାଙ୍କୁ ପରିହାସ କରୁଥିଲେ । ହେଲେ ଏଇ ଓଡ଼ିଆ ବାଳକ ଥିଲେ ନିର୍ଭୀକ । ସେ କାହାର ଥଟ୍ଟା ପରିହାସକୁ ଖାତିରି କରୁନଥିଲେ ।

ଥରେ ଜଣେ ବଙ୍ଗାଳି ପିଲା ତାଙ୍କ ଚୁଟିକୁ କ୍ଲାସରେ କତୁରିରେ କାଟିଦେଲା । ବଙ୍ଗାଳି ପିଲାର ଏପରି ବ୍ୟବହାରରେ ସେ ଟିକିଏ ବି ଭାଙ୍ଗି ପଡିନଥିଲେ ।

ଏହି ସମୟରେ ଜଣେ ବଙ୍ଗାଳି ଯୁବକ ଏଣ୍ଟ୍ରାନ୍ସ ପାସ୍‌କରି ସେହି ସ୍କୁଲର ପ୍ରଧାନ ଶିକ୍ଷକ ହୋଇ ଆସିଲେ । ସେ ଇଂରାଜୀ ପଢାଇଲେ । ଦିନେ ସେ ଇଂରାଜୀ ପଢାଉଥିବାବେଳେ ଗୋଟିଏ ଇଂରାଜୀ ଶବ୍ଦର ଅର୍ଥକୁ ଭୁଲ ଭାବରେ କହିଲେ । ଏହି ନିର୍ଭୀକ ଓଡ଼ିଆ ବାଳକ ଆସନରୁ ଉଠି ଏହା ଭୁଲ୍ ବୋଲି କହି ପକାଇଲେ । ଓଡ଼ିଆ ବାଳକର ଏପରି ପ୍ରତିବାଦ, ବଙ୍ଗାଳି ପ୍ରଧାନ ଶିକ୍ଷକଙ୍କୁ ଭାରି ବାଧିଲା । ସେ ବାଳକର ନାମ ସ୍କୁଲରୁ କାଟି ଦେଲେ । ସ୍କୁଲରୁ ବହିଷ୍କାର ଆଦେଶ ଦେଲେ । ପ୍ରଧାନ ଶିକ୍ଷକ କାରଣ ଦର୍ଶାଇଲେ ଯେ, ଏହି ବାଳକ ସ୍ୱାଧୀନପ୍ରିୟ ଓ ଅବାଧ । କେତେଜଣ ଓଡ଼ିଆ ପିଲା ସେହି ଓଡ଼ିଆ ବାଳକ ପାଖକୁ ଆସି କହିଲେ, "ତୁମେ ଯାଇ ପ୍ରଧାନ ଶିକ୍ଷକଙ୍କୁ କ୍ଷମା ମାଗ ।" ହେଲେ ଏହି ଓଡ଼ିଆ ବାଳକଙ୍କର ବିବେକ ତାଙ୍କୁ ବାଧାଦେଲା । ସେ ଥିଲେ ଭାରି ଆତ୍ମଅଭିମାନୀ । ଭୁଲ ନଥାଇ କ୍ଷମା ମାଗିବାର ପ୍ରଶ୍ନ ନାହିଁ ବୋଲି ସେ ସେହି ପିଲାମାନଙ୍କୁ କହିଲେ ।

ତହିଁ ପରିଦିନ ସକାଳ ହେଲା । ସେହି ନିର୍ଭୀକ ଓଡ଼ିଆ ବାଳକ ଯାଇ ପହଞ୍ଚିଲେ କଲେକ୍ଟରଙ୍କ କୋଠିରେ । କଲେକ୍ଟର ଥିଲେ ମିଃ. ହଲି ନାମରେ ଜଣେ ଉଚ୍ଚ ଗୋରା ଅଫିସର । ଆଇ.ସି.ଏସ୍. ଅଫିସର । ସେହି ସ୍କୁଲ କଥା ସେ ବୁଝାବୁଝି କରୁଥିଲେ । ବାଳକଟି ଯାଇ କୋଠିର ପିଣ୍ଡାତଳେ ଠିଆହୋଇ ରହିଲେ । ସାହେବ ଆସିଲେ ଦେଖା କରିବେ ବୋଲି ଅପେକ୍ଷା କଲେ । କିଛି ସମୟ ପରେ ସାହେବ ଆସି ପହଞ୍ଚିଲେ । ସାହେବ ଓଡ଼ିଆର ପିଲାଟିକୁ ପଚାରିଲେ, ତୁମେ କାହିଁକି ଆସିଛ । କ'ଣ ଚାହଁ ? ନିର୍ଭୀକ ଓଡ଼ିଆ ବାଳକ ଗତଦିନ ସ୍କୁଲରେ ଘଟିଥିବା ସବୁକଥା ଗୋଟି ଗୋଟି କରି କହିଚାଲିଲେ । ତା' ସହିତ ପାଠ୍ୟ ପୁସ୍ତକର ସେହି ଅଂଶଟିକୁ ସାହେବଙ୍କୁ ଦେଖାଇଲେ । ପ୍ରଧାନ ଶିକ୍ଷକ ସେହି ବାକ୍ୟର ଅର୍ଥ କ'ଣ କହିଥିଲେ ଆଉ ସେହି ବାକ୍ୟର ଅର୍ଥକୁ କେମିତି ବୁଝନ୍ତି ସେ କଥା ବି କହିଲେ । ପିଲାଟିର ଏପରି ନିର୍ଭୀକ ଭାବ ଦେଖି ସାହେବ ବଡ ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ,

"ତୁମେ ଓଡ଼ିଆ ନା ବଙ୍ଗାଳି ? ତୁମର ଜାତି କଣ ?" ନିର୍ଭୀକ ବାଳକ ନିଜକୁ ଗର୍ବର ସହ 'ଓଡ଼ିଆ' ବୋଲି ପରିଚୟ ଦେଲେ ।

ସାହେବ ସବୁ ଶୁଣି ଦୀର୍ଘ ନିଃଶ୍ୱାସଟିଏ ଛାଡିଲେ । ବାଳକକୁ ବିଦାୟ ଦେବାବେଳେ କହିଲେ, "ଆସନ୍ତା କାଲି ଦିନ ଏଗାରଟାବେଳେ ତୁମେ ସ୍କୁଲରେ ମୋତେ ଦେଖା କରିବ ।" ପରଦିନ ସକାଳ ହେଲା । ବାଳକ ଦଶଟାରୁ ଯାଇ ସ୍କୁଲ ଫାଟକ ମୁହଁରେ ଅପେକ୍ଷା କରି ରହିଲେ । ଠିକ୍ ସମୟରେ ସାହେବ ସ୍କୁଲରେ ଆସି ପହଞ୍ଚିଲେ । ସେ ସ୍କୁଲରେ ପଶିବାବେଳେ ବାଳକ ଜଣକ ତାଙ୍କ ମୁଣ୍ଡ ନୁଆଇଁ ପ୍ରଣାମ ଜଣାଇଲେ । ସାହେବ କିଛି ସମୟ ସ୍କୁଲରେ ରହି ଚାଲି ଆସିଲେ । ସଙ୍ଗେ ସଙ୍ଗେ ପ୍ରଧାନ ଶିକ୍ଷକ ସେହି ପିଲାକୁ ଡକାଇ ପଠାଇଲେ । ସେ ଯାଇ ପ୍ରଧାନ ଶିକ୍ଷକ ପାଖରେ ପହଞ୍ଚିଲେ । ପ୍ରଧାନ ଶିକ୍ଷକ କହିଲେ, "ମୁଁ ତୁମକୁ କ୍ଷମା କରିଦେଇଛି । ତୁମକୁ ପୁଣି ସ୍କୁଲରେ ପଢିବା ପାଇଁ ଅନୁମତି ଦେଲି । ଏବେ ତୁମେ କ୍ଲାସକୁ ଆସି ପଢାପଢି କର ।"

ସେହି ଦିନଠାରୁ ବଙ୍ଗାଳି ପିଲା ଓ ଶିକ୍ଷକମାନଙ୍କର ବ୍ୟବହାର ଏହି ଓଡ଼ିଆ ପିଲାପ୍ରତି ବଦଳିଗଲା । ମନେ ମନେ ବଙ୍ଗାଳି ପିଲାମାନେ ଏହି ଓଡ଼ିଆ ନିର୍ଭୀକ ବାଳକକୁ ଭୟ କଲେ । ଶ୍ରଦ୍ଧା ଓ ସମ୍ମାନ ବି ଦେଖାଇଲେ । ଅନ୍ୟାୟ ବିରୁଦ୍ଧରେ ଲଢି ଏହି ଓଡ଼ିଆ ବାଳକ ବିଜୟୀ ହେଲେ । ଏହା ଥିଲା ତାଙ୍କ ଜୀବନର ପ୍ରଥମ ବିଜୟ । ସେ ଜୀବନରେ କେବେ କାହାର ଗୋଡାଣିଆ ହୋଇ ନାହାନ୍ତି କି କାହାକୁ ଖୋସାମତ କରିନାହାନ୍ତି । ଅନ୍ୟାୟ କାମ କରି କାହାପାଖରେ ମୁଣ୍ଡ ବି ନୁଆଇଁ ନାହାନ୍ତି । ସେ ଜୀବନରେ ସବୁ କାମରେ ଆଗେଇ ଯାଉଥିଲେ । ପଛକୁ ଫେରି ଚାହୁଁ ନଥିଲେ ।

୧୮୬୪ ମସିହାରେ ଏହି ଓଡ଼ିଆ ବାଳକ ଏଣ୍ଟ୍ରାନ୍ସ (ମାଟ୍ରିକ) ପାସକଲେ । ବାଲେଶ୍ୱର ସହରର କିଛିଦିନ ଚାକିରି କରି ଚାଲିଲେ କଲିକତାକୁ । ସେଠାରେ କଲେଜରେ ପଢି ଉଚ୍ଚଶିକ୍ଷିତ ହେବା ପାଇଁ । ତାଙ୍କ ବାପାଙ୍କର ଇଚ୍ଛା ନଥିଲା ଅଧିକ ପଢେଇବା ପାଇଁ । ତାଙ୍କ ବାପା ଚାହୁଁଥିଲେ ପୁଅ ମାଟ୍ରିକ ପାସକରି କିରାଣୀ ଚାକରି କଲେ ଭଲ । ହେଲେ ସେହି ବାଳକ ଚାହୁଁଥିଲେ ଉଚ୍ଚଶିକ୍ଷିତ ହୋଇ ଓଡ଼ିଶା ଓ ଓଡ଼ିଆ ଜାତିର ନାଁ ରଖିବାକୁ ।

ସେ କଲିକତାରେ ପଢିବାବେଳେ ତାଙ୍କର ଦ୍ୱିତୀୟ ଭାଷାପତ୍ର ଥିଲା ସଂସ୍କୃତ । ସଂସ୍କୃତ ପ୍ରଶ୍ନର ଉତ୍ତର ନିଜ ମାତୃଭାଷାରେ ଲେଖିବା ପାଇଁ ସେତେବେଳେ ନିୟମ ଥିଲା । ହେଲେ ଯାହାର ମାତୃଭାଷା ଓଡ଼ିଆ ସେହି ପିଲାମାନେ ସଂସ୍କୃତ ପ୍ରଶ୍ନର ଉତ୍ତର ଓଡ଼ିଆରେ ନଲେଖି ବଙ୍ଗଳା ଭାଷାରେ ଲେଖିବେ ବୋଲି ଆଦେଶ ଥିଲା । କାରଣ ପରୀକ୍ଷକ ଓଡ଼ିଆ ଜାଣି ନଥିଲେ । ଏହି ଓଡ଼ିଆ ନିର୍ଭୀକ ଛାତ୍ର ଏହି ନିୟମର ଘୋର ବିରୋଧ କଲେ । ସେଥିପାଇଁ ଆନ୍ଦୋଳନ ବି କଲେ । ଶେଷରେ ତାଙ୍କର ଦାବି ପୂରଣ ହେଲା । ଏହା ଏକ ପ୍ରକାର ଭାଷା ଆନ୍ଦୋଳନ ଥିଲା । ଏହା ହେଲା ତାଙ୍କର ଦ୍ୱିତୀୟ ବିଜୟ । ଏମିତି ଭାବରେ ସେ ସବୁ କାମରେ ବିଜୟୀ ହେଉଥିଲେ ।

ଏହି ଓଡ଼ିଆ ବାଳକ ବଡ ହେଲେ । ସେ ହେଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ନିର୍ମାତା । ତାଙ୍କ ନାଁ ଉତ୍କଳଗୌରବ ମଧୁସୂଦନ ଦାସ । ସେ ମଧୁବାବୁ ନାଁରେ ପରିଚିତ । ମଧୁବାବୁ ୧୮୪୮ ମସିହା ଏପ୍ରିଲ ୨୮ ତାରିଖରେ କଟକ ଜିଲ୍ଲା ସତ୍ୟଭାମାପୁର ଗାଁରେ ଜନ୍ମ ହୋଇଥିଲେ । ସେ ଥିଲେ ପ୍ରଥମ କରି ବି.ଏ., ଏମ୍.ଏ ଓ ବି.ଏଲ. ପାସ କରିଥିବା ଓଡ଼ିଆ । ପ୍ରଥମ ଓଡ଼ିଆ ମନ୍ତ୍ରୀ । ଆଉ ପ୍ରଥମ କରି ମନ୍ତ୍ରୀପଦରୁ ଇସ୍ତଫା ଦେଇଥିବା ଭାରତୀୟ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ତାଙ୍କ ପରିଶ୍ରମର ଫଳ । ଓଡ଼ିଆ ସ୍ୱତନ୍ତ୍ର ପ୍ରଦେଶ ହେବା ଆଗରୁ ସେ ଆଖିବୁଜି ଦେଇଥିଲେ । ୧୯୩୪ ମସିହା ଫେବୃଆରି ଚାରି ତାରିଖରେ କଟକ ନଗରୀରେ ତାଙ୍କର ପରଲୋକ ହୋଇଗଲା । ଲକ୍ଷ ଲକ୍ଷ ଓଡ଼ିଆ ତାଙ୍କ ମୃତ୍ୟୁରେ ଗଭୀର ଶୋକ ଜଣାଇଲେ ।

ମଧୁବାବୁ ଥିଲେ ଉତ୍କଳ ମାତାର ଯୋଗ୍ୟତମ ପୁତ୍ର । ଓଡ଼ିଆ ଜାତିର ଗର୍ବ ଓ ଗୌରବ । ସେ ଥିଲେ ସାହସୀ, ନିର୍ଭୀକ, ଚତୁର, ବୁଦ୍ଧିମାନ, ସଚ୍ଚୋଟ, ଜ୍ଞାନୀ ଓ ପଣ୍ଡିତ ମଣିଷ । ତାଙ୍କ ପରି କିଏ ହେବ ? ଏମିତିଆ ପୁଅ ଏଯାଏ ଓଡ଼ିଶାରେ ଜନ୍ମ ହୋଇନାହାନ୍ତି ।

***



# ଦୋଷ ମାନିଥିବା ପିଲାଟି

ଉତ୍ତର ପ୍ରଦେଶର ଏହ୍ଲାବାଦ ସହର । ଏଇଠି ଥିଲେ ଜଣେ ନାମଜାଦା ଓକିଲ । ଯେମିତି ଜ୍ଞାନୀ ସେମିତି ଗୁଣୀ । ଧନ ସମ୍ପତ୍ତିରେ ଊଣା ନାହିଁ । ପଣ୍ଡିତ ହିସାବରେ ତାଙ୍କର ବି ଖୁବ୍ ନାଁ ଥିଲା । ଓକିଲଙ୍କର ଥିଲା ଗୋଟିଏ ପୁଅ । ପୁଅଟି ଥିଲା ଓକିଲଙ୍କର ପ୍ରଥମ ସନ୍ତାନ । ଖୁବ୍ ଅଲିଅଳରେ ବଢ଼ିଥିଲା ପିଲାଟି । ମହା ମଉଜରେ ତାର ଦିନ ବିତୁଥିଲା । ବାପା ପୁଅ ପାଇଁ ବିଦେଶୀ ତିନିଚକିଆ ସାଇକେଲ ଆଉ ଆରବୀ ଘୋଡାଟିଏ ଖଞ୍ଜି ଦେଇଥିଲେ ।

ପିଲାଟିକୁ ଆସି ପାଞ୍ଚବର୍ଷ ବୟସ ହେଲା । ବାପା ଘରକୁ ବ୍ରାହ୍ମଣ ପଣ୍ଡିତଙ୍କୁ ଡାକି ଆଣିଲେ । ପଣ୍ଡିତେ ପୁଅକୁ ହିନ୍ଦୀ, ସଂସ୍କୃତ ଶିକ୍ଷା ଦେଲେ । ତାପରେ

ପୁଅର ନାଁ ନେଇ ଲେଖେଇ ଦେଲେ ଏହ୍ଲାବାଦର ସେଣ୍ଟମେରୀ କନ୍‌ଭେଣ୍ଟ ସ୍କୁଲରେ । ପୁଅ ଇଂରାଜୀ ଭାଷାରେ ଭଲ କରିବ ବୋଲି ବାପା ଜଣେ ଇଂରାଜୀ ଶିକ୍ଷକଙ୍କୁ ଘରକୁ ଆଣିଲେ । ସେହି ଇଂରେଜୀ ଶିକ୍ଷକଙ୍କ ନାଁ ଥିଲା ଫର୍ଡିନାଣ୍ଡ ବ୍ରୁକସ । ପିଲାଟି ଅଳ୍ପଦିନ ଭିତରେ ଇଂରାଜୀ ଭାଷାରେ ଧୁରନ୍ଧର ହୋଇଗଲା । 'ଆଲିସ୍ ଇନ ଦ ଓ୍ୱାଣ୍ଡର ଲ୍ୟାଣ୍ଡ', 'ପ୍ରିଜନର ଅଫ୍ ଜେଣ୍ଡା' ଓ ଥ୍ରୀମେନ୍ ଇନ୍‌ଦ ବୋଟ' ଆଦି ଇଂରାଜୀ ଗପବହି ପିଲାଟି ଅଳ୍ପଦିନ ଭିତରେ ପଢ଼ି ଶେଷ କରିଦେଲା । ପାଠପଢ଼ା ବ୍ୟତୀତ ପିଲାଟି ସନ୍ତରଣ, ଘୋଡ଼ା ଚଢ଼ା, କ୍ରିକେଟ ଓ ଟେନିସ୍ ଖେଳିବାକୁ ଖୁବ୍ ଭଲପାଉଥିଲା ।

ପିଲାଟିର ବାପା ଥିଲେ ଖୁବ୍ ସାହସୀ, ଚତୁର, ବଳବାନ୍ ଓ ନିର୍ଭୀକ । ସେ ବାପାଙ୍କର ଏହି ଗୁଣ ଦେଖି ବଡ ହେଲେ ବାପାଙ୍କ ପରି ହେବ ବୋଲି ଭାବୁଥିଲା ।

ହେଲେ ତାର ବାପା ଥିଲେ ଭୀଷଣ ରାଗୀ । ଟିକିଏ ଟିକିଏ କଥାରେ ହଠାତ୍ ରାଗି ଯାଉଥିଲେ । ବାପାଙ୍କର ଏହି ଗୁଣଟି ତାକୁ ଆଦୌ ଭଲ ଲାଗୁନଥିଲା । ହେଲେ ପିଲାଟି ବାପାଙ୍କୁ ଭରସିକରି କେବେ କିଛି କହିପାରୁ ନଥିଲା । ନିଜ ମନକଥା କେବଳ ସେ ମା'ଙ୍କ ଆଗରେ ଖୋଲି କରି କହୁଥିଲା ।

ପିଲାଟିର ବୟସ ସେତେବେଳକୁ ଛଅ ସାତବର୍ଷ ହେବ । ଆଜିକି ଠିକ୍ ଏକଶହ କୋଡ଼ିଏ ବର୍ଷ ତଳର କଥା । ପିଲାଟି ଦିନେ ହଠାତ୍ ବାପାଙ୍କ ଅଫିସରୁମ ଭିତରକୁ ପଶିଗଲା । ଦେଖିଲା ବାପାଙ୍କର ଟେବୁଲ ଉପରେ ଥୁଆ ହୋଇଛି ଦୁଇଟି ସୁନ୍ଦରିଆ କଲମ । ସେଥିରୁ ଗୋଟିଏ ନେବା ପାଇଁ ତା ମନରେ ଲୋଭଜାତ ହେଲା । ସେ ମନେ ମନେ ଭାବିଲା, "ବାପା ତ କେବେ ଏକାଥରକେ ଦୁଇଟିଯାକ କଲମରେ ଲେଖୁନଥିବେ ! ସେଥିରୁ ଗୋଟିଏ ନେଇଗଲେ କ୍ଷତି କ'ଣ ?" ଏଇକଥା ଭାବି ସେ ବାପାଙ୍କ ଟେବୁଲରୁ କଲମଟିଏ ନେଇ ଆସିଲା । କିଛି ସମୟ ପରେ ବାପା ଆସି କଲମ ଖୋଜିଲେ । ବହୁତ ଖୋଜା ଖୋଜି ପରେ ବି କଲମଟି ମିଳିଲା ନାହିଁ । କଲମ ନ ମିଳିବାରୁ ବାପା ଖୁବ୍ ଜୋରରେ ରାଗିଗଲେ ।

ବାପାତ ଭୀଷଣ ରାଗୀ, ଏକଥା ପିଲାଟି ଭଲକରି ଜାଣିଥିଲା । ଏବେ ବାପା କଲମ ଖୋଜି ଆହୁରି ଭୀଷଣ ଜୋରରେ ରାଗିଗଲେଣି ଦେଖି ପିଲାଟି

ବରଡା ପତ୍ର ପରି ଥରିବାରେ ଲାଗିଲା । ହେଲେ କଲମଟି ନେଇଛି ବୋଲି ସେ କାହାକୁ କହୁନଥାଏ । ବହୁତ ଖୋଜା ଖୋଜି ପରେ କଲମଟି ତା ପାଖରୁ ହିଁ ବାହାରିଲା । ବାପା କି ଛାଡିବାର ଲୋକ । ସେ ରାଗରେ ଖୁବ୍ ଜୋରରେ ପୁଅକୁ ପିଟିଲେ । ପିଲାଟି ମାଡଖାଇ ଦୌଡି ଦୌଡି ଆସି ମାଙ୍କ ପଣତ ତଳେ ଆଶ୍ରୟ ନେଲା । ତଥାପି ବାପା ତାକୁ ଛାଡିଲେ ନାହିଁ । ମାରିମାରି ପୁଅକୁ ଖଣ୍ଡିଆ ଖାବରା କରିଦେଲେ । ପିଲାଟି ଏତେ ମାଡ ଖାଇଲା ଯେ ତା' ଦେହଯାକ ନୋଳା ଫାଟିଗଲା । ଦେହ ହାତ ଭୀଷଣ ଦରଜ ହୋଇଗଲା । ତା ଦେହରେ ନାନା ପ୍ରକାର ମଲମ ମାଲିସ କରାଗଲା । ଯାହାହେଉ କେତେଦିନ ପରେ ପିଲାଟିର ଦେହ ହାତର ଦରଜ ଉପଶମ ହୋଇଗଲା । କ୍ଷତ ଶୁଖିଗଲା । ସେ ପୂରାପୂରି ଭଲ ହୋଇଗଲା । ଭଲ ହୋଇଯିବା ପରେ ସେ ମନେ ମନେ ଭାବିଲା, "ଦୋଷ ପାଇଁ ଦଣ୍ଡ ପାଇଲି । ଏଥିରେ ଦୁଃଖ କରିବା ଉଚିତ୍ ନୁହେଁ । ହେଲେ ଦୋଷ ତୁଳନାରେ ଦଣ୍ଡର ପରିମାଣ ଟିକିଏ ଅଧିକ ହୋଇଗଲା ।" ଜୀବନରେ ଆଉ କେବେ ଏମିତି ଭୁଲ ନକରିବା ପାଇଁ ପିଲାଟି ମନେ ମନେ ଶପଥ ନେଲା ।

ଏହି ପିଲାକୁ ଦଶବର୍ଷ ବୟସ ହେବାପରେ ତାର ଆଉ ଦୁଇଟି ଭଉଣୀ ଜନ୍ମ ନେଇଥିଲେ । ଏହି ପିଲା ଦିନେ ବଡ ହେଲେ । ବିଦେଶକୁ ଯାଇ ବହୁତ ପାଠ ପଢିଲେ । ଦେଶକୁ ଫେରି ଆସିଲେ । ଚାକିରି କରିବାକୁ ମନବଳାଇଲେ ନାହିଁ । ସେତେବେଳେ ଆମ ଦେଶକୁ ଇଂରେଜମାନେ ଶାସନ କରୁଥିଲେ । ଦେଶରୁ ଇଂରେଜମାନଙ୍କୁ ହଟାଇବା ପାଇଁ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଲେ । ବାପୁଙ୍କ ସହ ମିଶି ଆନ୍ଦୋଳନ କଲେ । ତାଙ୍କ ପିତା, ସ୍ତ୍ରୀ ଓ ପରିବାରର ଅନ୍ୟମାନେ ବି ଏହି ସ୍ୱାଧୀନତା ସଂଗ୍ରାମ ସହ ଜଡିତ ହୋଇ ପଡିଲେ । ସେ ବାରମ୍ବାର ଜେଲ ଗଲେ । ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ସମୁଦାୟ ୩୨୬୨ ଦିନ ଜେଲ ଭୋଗିଥିଲେ । ଦେଶ ସ୍ୱାଧୀନ ହେଲା । ସେ ହେଲେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ସେ ପ୍ରଧାନମନ୍ତ୍ରୀ ଥିବାବେଳେ ଦିନକୁ ମାତ୍ର ଚାରିଘଣ୍ଟା ବିଶ୍ରାମ ନେଉଥିଲେ । ବାକିସବୁ ସମୟରେ ଦେଶର ଉନ୍ନତି କଥା ଚିନ୍ତା କରୁଥିଲେ । ସେ ଦୀର୍ଘ ସତର ବର୍ଷକାଳ ଭାରତର ପ୍ରଧାନମନ୍ତ୍ରୀ

ଥିଲେ । ସେ ହେଉଛନ୍ତି ପଣ୍ଡିତ ଜବାହାରଲାଲ ନେହେରୁ । ସେ ପିଲାମାନଙ୍କୁ ଖୁବ୍ ଭଲ ପାଉଥିଲେ । ପିଲାମାନେ ତାଙ୍କୁ 'ଚାଚା ନେହେରୁ' ବୋଲି ଡାକୁଥିଲେ ।

ପଣ୍ଡିତ ଜବାହାରଲାଲ ନେହେରୁଙ୍କର ବାପାଙ୍କ ନାଁ ପଣ୍ଡିତ ମୋତି ଲାଲ ନେହେରୁ । ମାଙ୍କ ନାଁ ସ୍ୱରୂପରାଣୀ । ତାଙ୍କର ଅନ୍ୟ ଦୁଇ ଭଉଣୀମାନେ ହେଲେ ପଣ୍ଡିତ ବିଜୟଲକ୍ଷ୍ମୀ ଓ କିଷ୍ଟା ହାତୀ ସିଂହ । ପଣ୍ଡିତ ଜବାହାରଲାଲ ନେହେରୁ ୧୮୮୯ ମସିହା ନଭେମ୍ବର ୧୪ ତାରିଖ ଦିନ ଏହ୍ଲାବାଦ ଠାରେ ଜନ୍ମ ହୋଇଥିଲେ । ସେ ପିଲାମାନଙ୍କୁ ଖୁବ୍ ଭଲ ପାଉଥିଲେ ବୋଲି ତାଙ୍କ ଜନ୍ମଦିନକୁ 'ଶିଶୁ ଦିବସ' ଭାବରେ ପାଳନ କରାଯାଏ । ଦୋଷ ମାନିଥିବା ସେଇ ପିଲାଟି ବଡ ହୋଇ ଭାରତର ପ୍ରଧାନମନ୍ତ୍ରୀ ହେଲେ ।

ସେ ଆଉ ଆମ ଭିତରେ ନାହାଁନ୍ତି । ୧୯୬୪ ମସିହା ମଇମାସ ୨୭ ତାରିଖ ବୁଧବାର ଦିନ ସେ ଇହଲୀଳା ତ୍ୟାଗ କରିଯାଇଛନ୍ତି । ସେ ମରି ଆଜି ଅମର । ତାଙ୍କର ଗୁଣ ଓ କାମ ପାଇଁ ସେ ସବୁଦିନ ଭାରତ କାହିଁକି ପୃଥିବୀବାସୀଙ୍କ ପାଖରେ ଚିର ଅମର ।

***



# ବିନୟୀ ବାଳକ

ଗୋଟିଏ ଛାତ୍ରାବାସ । ଦିନକର କଥା । ସେଦିନ ଥାଏ ଛୁଟି । ପିଲାମାନେ ଏକାଠି ବସି ଗପସପ କରୁଛନ୍ତି । କୋଳାହଳ ଲାଗିରହିଛି । ଏତିକିବେଳେ ଛାତ୍ରାବାସ ଅଧ୍ୟକ୍ଷ ସେଇଠି ଆସି ପହଞ୍ଚିଲେ । ସେ ଟିକିଏ ରାଗିଲୋକ । ପିଲାମାନଙ୍କୁ ଗାଳିଦେଇ କହିଲେ - "ଆଜି ଛୁଟିଦିନ । ନିଜ ନିଜ କୋଠରିକି ସଫା କରିବା କଥା । ସେତକ ନକରି ଏଠି ବସି ଗପ ମାରୁଛ ! ତୁମମାନଙ୍କର କୋଠରି ସବୁ ଅଳିଆରେ ପୂରିଛି । ଏଇଠି ବି ଅଳିଆ ଆବର୍ଜନା ପକେଇଛ । ଧନ୍ୟ ତୁମମାନଙ୍କୁ କହିବ ? ଯାଅ, ଆଗ ନିଜ ନିଜ କୋଠରିକୁ ସଫାକର ।"

ଅଧ୍ୟକ୍ଷ ତ ଭାରି ରାଗୀ । ପିଲାମାନେ ତାଙ୍କ କଥା ଶୁଣି ଡରିଗଲେ । ସେମାନେ ଆଉ ଡେରି ନକରି ନିଜ ନିଜ କୋଠରି ସଫା କରିବାରେ ଲାଗିଲେ ।

ଅଧ୍ୟକ୍ଷ ଦେଖିଲେ, ତାଙ୍କ କଥା ମାନି ସବୁପିଲା ଚାଲିଗଲେ । ହେଲେ ଗୋଟିଏ ପିଲା ଗଲା ନାହିଁ । ସେ ବାରଣ୍ଡାରେ ବସି ପଢିବାରେ ଲାଗିଲା । ଅଧ୍ୟକ୍ଷ ରାଗ ତମତମ ହୋଇ ତା' ପାଖକୁ ଗଲେ । ଚିଲେଇ କରି କହିଲେ, "ମୁଁ କ'ଣ କହିଲି ତୁମକୁ କ'ଣ ଶୁଭିଲା ନାହିଁ ?"

ସେହି ପିଲାଟି ବଡ ଶାନ୍ତଶିଷ୍ଟ ଆଉ ସରଳ । ସେ କହିଲା, "ସାର ! ଆପଣ ଯାହା କହିଲେ ମୁଁ ଶୁଣିଛି ।" ପିଲାଟି ବଡ ଧୀର ଓ ନମ୍ର ଗଳାରେ କହିଲା । ଅଧ୍ୟକ୍ଷ ପୁଣି ରାଗିଯାଇ କଡା ଭାଷାରେ କହିଲେ, "ଶୁଣିଛ ଯଦି ଏଠି କାହିଁକି ବସିଛ ? କ'ଣ ପାଠ ପଢୁଛ ବୋଲି ଦେଖେଇ ହେଉଛ ?"

"ନାଇଁ ସାର୍ ! ମୁଁ ସକାଳୁ ଉଠି କୋଠରିକୁ ପୂରା ସଫା କରିଦେଇଛି" ବୋଲି ପିଲାଟି ଧୀର ଓ ନରମ ଗଳାରେ କହିଲା । 'ନା, ତୁମେ ମିଛ କହୁଛ !' ବୋଲି ଚିତ୍କାର କରି ଅଧ୍ୟକ୍ଷ ରାଗରେ ଜଳି ଉଠିଲେ । ପିଲାଟି କହିଲା, "ସାର୍ ! ମୁଁ ବଡମାନଙ୍କ ଆଦେଶ ପାଳନ କରେ । ନିଜ କାମ ଠିକ୍ ସମୟରେ ଠିକ୍ ଭାବରେ କରେ । କେବେ ମିଛ କହେ ନାହିଁ । ଯଦି ଆପଣଙ୍କର ମୋ କଥାରେ ବିଶ୍ୱାସ ହେଉନି, ତେବେ ଆପଣ ଯାଇ ମୋ କୋଠରି ବୁଲି ଦେଖିପାରିବେ ।"

ତଥାପି ବି ଅଧ୍ୟକ୍ଷ ସେଇ ଛାତ୍ରଙ୍କ କଥାରେ ବିଶ୍ୱାସ କଲେ ନାହିଁ । ସେ ସେଇ ଛାତ୍ରର କୋଠରିକୁ ଦେଖିବାକୁ ଗଲେ । ସେ ଦେଖିଲେ, ସତକୁ ସତ କୋଠରିଟି ପୂରା ସଫା ସୁତୁରା । ଯେଉଁ ଜିନିଷ ଯେଉଁଠି ରହିବା କଥା ସେସବୁ ଠିକ୍ ଭାବରେ ରହିଛି । ଏସବୁ ଦେଖି ଅଧ୍ୟକ୍ଷ ଲଜ୍ଜିତ ହୋଇ ଫେରିଆସିଲେ ।

ଏଇ ଛାତ୍ର ଜଣକ ଆଉ କେହି ନୁହନ୍ତି । ସେ ହେଉଛନ୍ତି, 'ବାଲ୍ ଗଙ୍ଗାଧର ତିଲକ' । ସେ ବଡ ହେଲେ । ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ବହୁଥର କାରାବରଣ କଲେ । ଭାରତର ଜଣେ ବଡନେତା ଭାବରେ ପରିଚିତ ହେଲେ । ଅନେକ ବହି ଲେଖିଲେ । ତାଙ୍କୁ ମହାତ୍ମାଗାନ୍ଧୀ ଖୁବ୍ ମାନୁଥିଲେ । ସେ ଜନ୍ମ ହୋଇଥିଲେ ତା.୨୩.୦୭.୧୮୫୬ରିଖରେ ମହାରାଷ୍ଟ୍ରର ରତ୍ନଗିରିଠାରେ । ତାଙ୍କର ପରଲୋକ ହୋଇଥିଲା ତା.୦୧.୦୮.୧୯୨୦ ରିଖରେ ବମ୍ବେ ସହରରେ ।

***



# ବୀର ବାଳକ

ଆଜିକି ଶହେ ଦଶ ବର୍ଷ ତଳର କଥା । ୧୯୦୫ ମସିହା । ଏହି ବର୍ଷ ମହାନ୍ ସ୍ୱାଧୀନତା ସଂଗ୍ରାମୀ ଚନ୍ଦ୍ରଶେଖର ଆଜାଦ୍ ଜନ୍ମ ନେଇଥିଲେ । ତାଙ୍କ ଜନ୍ମସ୍ଥାନ ଅଲିପୁର ରାଜ୍ୟର ଭାବରା ଗ୍ରାମ । ଚନ୍ଦ୍ରଶେଖର ଜନ୍ମ ନେଇଥିଲେ ଗୋଟିଏ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ । ପିତାଙ୍କ ନାମ ପଣ୍ଡିତ ସୀତାରାମ ତେଓ୍ୱାରୀ । ମାତାଙ୍କର ନାମ ଜଗରାଣୀ ଦେବୀ । ସେ ଥିଲେ ପିତାମାତାଙ୍କର ଏକମାତ୍ର ସନ୍ତାନ । ଏକୋଇର ବଳା । ଚନ୍ଦ୍ରଶେଖର ପିଲାଦିନରୁ ଥିଲେ ନିର୍ଭୀକ ଓ ସାହସୀ ।

ସେହି ସମୟରେ ଚନ୍ଦ୍ରଶେଖରଙ୍କ ଗାଁ ରେ ପାଠଶାଳା ନଥିଲା । ଫଳରେ ତାଙ୍କର ଶିକ୍ଷା ବନାରସରେ ଆରମ୍ଭ ହେଲା । ସେ ବନାରସରେ ପଢୁଥାଆନ୍ତି । ତାଙ୍କୁ ବାର ବର୍ଷ ବୟସ ହୋଇଥାଏ । ସେ ରାମାୟଣ ଶୁଣନ୍ତି । ମହାଭାରତ ଶୁଣନ୍ତି । ରାମାୟଣ ମହାଭାରତରେ ଥିବା ଯୁଦ୍ଧ ବର୍ଣ୍ଣନା ତାଙ୍କୁ ଖୁବ୍ ଭଲ ଲାଗେ । ସେ ମନକୁ ମନ କହନ୍ତି, "ମୁଁ ବଡ ହେଲେ ବୀର ହେବି । ତରବାରି ଧରି ଯୁଦ୍ଧ କରିବି । ଇଂରେଜମାନଙ୍କ ବିରୁଦ୍ଧରେ ଲଢେଇ କରିବି । ଦେଶକୁ ସ୍ୱାଧୀନ କରିବି ।"

ହେଲେ ବଡ ହେବା ଯାଏ କଥା ଗଲା ନାହିଁ । ତାଙ୍କୁ ଚଉଦ ବର୍ଷ ବୟସ ହୋଇଥିବା ବେଳର କଥା । ୧୯୧୯ ରେ ପଞ୍ଜାବ ପ୍ରଦେଶରେ ଜାଲିଆନା ୱାଲା ହତ୍ୟାକାଣ୍ଡ ଘଟିଲା । ବହୁ ଲୋକ ପ୍ରାଣ ହରାଇଲେ । ଇଂରେଜ ସରକାରର ଏହି ନିର୍ମମ ହତ୍ୟାକାଣ୍ଡ ଯୋଗୁଁ ଭାରତର ଚାରିଆଡେ ଦୁଃଖର ଛାୟା ଖେଳିଗଲା । ୧୯୨୦ ମସିହାରେ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନର ଡାକରା ଦେଲେ । ପନ୍ଦର ବର୍ଷ ବୟସର ଛାତ୍ର ଚନ୍ଦ୍ରଶେଖର ଏହି ଆନ୍ଦୋଳନରେ ଝାସ ଦେଲେ । ଆନ୍ଦୋଳନ କରି ଗିରଫ ହେଲେ ।

ସେତେବେଳେ ବନାରସରେ ଥିଲେ ଜଣେ ପାରସୀ ମାଜିଷ୍ଟ୍ରେଟ । ତାଙ୍କ ନାମ ଖେରଫାଟ୍ । ସେ ଥିଲେ ବଡ ନିର୍ଦ୍ଦୟ । ନିର୍ଦ୍ଦୟତା ପାଇଁ ସେ ଖୁବ୍ ପ୍ରସିଦ୍ଧି ଲାଭ କରିଥିଲେ । ଗିରଫ୍ ହେବାର ଦ୍ୱିତୀୟ ଦିନ ଚନ୍ଦ୍ରଶେଖରଙ୍କୁ ସେଇ ମାଜିଷ୍ଟ୍ରେଟଙ୍କ ଅଦାଲତରେ ହାଜର କରାଗଲା । ସେ ଏଇ ସୁନ୍ଦର ତରୁଣ ଚନ୍ଦ୍ରଶେଖରଙ୍କୁ ଦେଖିଲେ । ତାଙ୍କ ମନରେ ତରୁଣ ଚନ୍ଦ୍ରଶେଖର ପ୍ରତି ଦୟା ଦେଖାଦେଲା । ସେ ସାଧାରଣ ଭାବେର ଚନ୍ଦ୍ରଶେଖରଙ୍କୁ ପଚାରିଲେ "ତୁମର ନାମ କଣ ?"

ହେଲେ ଚନ୍ଦ୍ରଶେଖର କାହା ଦୟାର ପାତ୍ର ନୁହନ୍ତି । ସେ ନିର୍ଭୟରେ କହିଲେ ମୋ ନାମ 'ଆଜାଦ୍' । ଅର୍ଥାତ୍ , ମୁକ୍ତ । ମାଜିଷ୍ଟ୍ରେଟ ପୁଣି ପଚାରିଲେ – "ତୁମ ପିତାଙ୍କ ନା ?" ଚନ୍ଦ୍ରଶେଖର ଉତ୍ତର ଦେଲେ – "ସ୍ୱାଧୀନ" । ଏମିତିଆ ଉତ୍ତର ଶୁଣି ମାଜିଷ୍ଟ୍ରେଟ ଆଶ୍ଚର୍ଯ୍ୟ ହୋଇଗଲେ । ତା'ପରେ ପୁଣି ପଚାରିଲେ "ତୁମର ଘର ?" ଚନ୍ଦ୍ରଶେଖର ହସି ହସି ତାଚ୍ଛଲ୍ୟ କରି କହିଲେ – "ଜେଲ୍ ଖାନା" ।

ଚନ୍ଦ୍ରଶେଖର ନାମ ସେହିଦିନ ଠାରୁ ଚନ୍ଦ୍ରଶେଖର ତେୱାରୀ ପରିବର୍ତ୍ତେ ଚନ୍ଦ୍ରଶେଖର ଆଜାଦ୍ ହୋଇଗଲା । ତାଙ୍କର ଏପରି ତାଚ୍ଛଲ୍ୟ ଢଙ୍ଗର ଉତ୍ତର ଶୁଣି ମାଜିଷ୍ଟ୍ରେଟ୍ ଭୀଷଣ ରାଗିଗଲେ । ଲଙ୍ଗଳା କରି ତାଙ୍କ ପିଠାରେ ଖୁବ୍ ଜୋରରେ ପନ୍ଦର ବେତ ପ୍ରହାର କରିବା ପାଇଁ ହୁକୁମ ଦେଲେ । ଖୁବ୍ ଜୋରରେ ତାଙ୍କ ପିଠାରେ ପ୍ରହାର କରାଯାଉଥାଏ । ଆଉ ପ୍ରତ୍ୟେକ ଥର ଖୁବ୍ ଜୋରରେ ଧ୍ୱନିଦେଇ କହୁଥାନ୍ତି – 'ମହାତ୍ମା ଗାନ୍ଧିକୀ ଜୟ' । ସେ ଏତେ ଜୋରରେ ମାଡ ଖାଇଥିଲେ ଯେ ମଲାଯାଏ ତାଙ୍କ ଦେହରେ ସେହି ପ୍ରହାରର ଆଘାତ ଚିହ୍ନ ରହିଥିଲା ।

ବେତମାଡ ପରେ ଚନ୍ଦ୍ରଶେଖରଙ୍କୁ ଖଲାସ କରି ଦିଆଗଲା । ସେହିଦିନ ଠାରୁ ସେ ବୀର ବାଳକ ଭାବରେ ସାରା ଭାରତରେ ଖ୍ୟାତି ଲାଭ କଲେ । ଖଲାସ ହେବା ପରେ ତାଙ୍କୁ ବନାରସରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନ ଦିଆଗଲା । ଲୋକେ ଫୁଲମାଳରେ ତାଙ୍କୁ ପୋତି ପକାଇଲେ । ସେହିଦିନ ଠାରୁ ଚନ୍ଦ୍ରଶେଖର ଆଉ ପଛକୁ ଫେରି ନାହାନ୍ତି । ଆଗକୁ ଆଗକୁ ସେ ଆଗେଇ ଚାଲିଲେ । ତାଙ୍କ ପିତାଙ୍କର ପରଲୋକ ଘଟିଲା । ମା ପୁତ୍ର ଚନ୍ଦ୍ରଶେଖରଙ୍କୁ ଯେତେ ବୁଝାଇଲେ ବି ସେ ସ୍ୱାଧୀନତା ସଂଗ୍ରାମରୁ ଓହରିଲେ ନାହିଁ । ଇଂରେଜ ସରକାରଙ୍କର ଅତ୍ୟାଚାର ତାଙ୍କ ଉପରେ ବେଳକୁ ବେଳ ବଢିଚାଲିଲା । ସେ ଘର ଛାଡିଲେ । ଫେରାର ହୋଇଗଲେ । କିନ୍ତୁ ମାଙ୍କ ପ୍ରତି ତାଙ୍କର ଥାଏ ଗଭୀର ସ୍ନେହ, ଶ୍ରଦ୍ଧା ଓ ଭକ୍ତି ।

ଫେରାର ହୋଇ ଚନ୍ଦ୍ରଶେଖର ହରଦ୍ୱାର ପାଖରେ ବୁଲୁଥାନ୍ତି । ହଠାତ୍ ଦିନେ ନିଜ ଗାଁର ଜଣେ ଲୋକ ସହ ତାଙ୍କର ଭେଟ ହୋଇଗଲା । ସେ ଲୋକଟିଙ୍କୁ କହିଲେ, – "ଭାଇ ! ତୁମେ ଗାଁ କୁ ଯାଉଛ ? ମୋ ମା'କୁ କହିବ ତୁମ ସହ ମୋର ଭେଟ ହୋଇଥିଲା । ଆଉ ମୁଁ ଖୁବ୍ ଭଲରେ ଅଛି । ମୋ ମା' ମୋ ପାଇଁ ଖୁବ୍ ଚିନ୍ତା କରୁଥିବ । କାରଣ ବର୍ଷେ ହେବ ମୁଁ ଘରକୁ ଯାଇନି କି ମୋ ମା'ଙ୍କ ସହ ମୋର ଦେଖା ହୋଇନି ।"

ଲୋକଟି ଗାଁ କୁ ଗଲା । ଆଗ ଯାଇ ଚନ୍ଦ୍ରଶେଖରଙ୍କ ଘର ପାଖରେ ପହଞ୍ଚିଲା । ଦେଖିଲା ତାଙ୍କ ଘର ଚାରିପାଖରେ ପୋଲିସ ପହରା । ଲୋକଟି ତାଙ୍କ ଘରର ପଛ ଦରଜା କବାଟରେ ଖଟ୍ ଖଟ୍ କଲା । ଚନ୍ଦ୍ରଶେଖରଙ୍କ ମା' ଭାବିଲେ

ବୋଧେ ପୋଲିସ କବାଟ ବାଡାଉଛି । ସେ ଭିତରେ ଥାଇ କହିଲେ, "ମୋ ପରି ଦୁଃଖିନୀକୁ କାହିଁକି ଏମିତି ହଇରାଣ କରୁଛ ?"

ଲୋକଟି ନିଜର ପରିଚୟ ଦେଇ କହିଲା, "ମା ! ମୁଁ ଆସିଛି । ବାହାରକୁ ମା' ଆସିଲେ । ଲୋକଟିକୁ ପଣତ କାନିରେ ଘୋଡେଇ କରି ଘର ଭିତରକୁ ନେଇଗଲେ । ଲୋକ ଠାରୁ ପୁଅ ଖବର ପାଇ ବହୁତ ଖୁସି ହୋଇଗଲେ । ତାଙ୍କ ଆଖିରୁ ଧାର ଧାର ହୋଇ ଲୁହ ବୋହି ପଡିଲା । ପୁଣି କହିଲେ - "ବାପା ! ତୁମେ ଚନ୍ଦ୍ରଶେଖରକୁ କେବେ ଭେଟିବ ?"

ଲୋକଟି କହିଲା, "ମା ! ମୁଁ ଗାଁ କୁ କେବଳ ଦୁଇ ଦିନ ପାଇଁ ଆସିଛି । ପଅର ଦିନ ଏଠାରୁ ଫେରିଯିବି । ଚନ୍ଦ୍ରଶେଖରଙ୍କ ସହ ମୋର କଥାବାର୍ତ୍ତା ହୋଇଛି -ସେ ସେଦିନ ମୋ ରହିବା ଜାଗାରେ ଆସି ମୋତେ ଭେଟିବେ ।" ବୁଢୀ ଥର ଥର ହାତରେ କାନିର ଗଣ୍ଠି ଫିଟାଇଲେ । ତା' ଭିତରୁ ଗୋଟିଏ ଦୋ'ଅଣୀ ବାହାରିଲା । ପୁଅର ମିଠା ମିଠା କଥା ସବୁ ତାଙ୍କର ମନେପଡିଲା । ବୁଢୀଙ୍କ ଆଖିରୁ ପୁଣି ଥପ୍ ଥପ୍ ହୋଇ ଲୁହ ବୋହି ପଡିଲା । ବୁଢୀ କହିଲେ, "ମୋ' ପୁଅ ଚନ୍ଦ୍ରଶେଖରକୁ 'କଲାକନ୍ଦ' ଖାଇବାକୁ ଖୁବ୍ ଭଲ ଲାଗେ । ତୁମେ ଏଇ ଦି'ଅଣା ପଇସା ନିଅ । ନିଜ ହାତରେ କଲାକନ୍ଦ କିଣି ମୋ ପୁଅକୁ ଖୁଆଇ ଦେବ । ଆଉ କହିବ ତୁମ ମା' ତୁମ ପାଇଁ ୟା'କୁ ପଠେଇଛି ।" ଧନ୍ୟ ମା' ଧନ୍ୟ ତୋର ମମତା ।

ଚନ୍ଦ୍ରଶେଖରଙ୍କ ଜନ୍ମ ତା.୨୩.୦୭.୧୯୦୬ ରିଖରେ ଉତ୍ତରପ୍ରଦେଶର ଭାବରା (ଭାରତ) ଠାରେ । ପରଲୋକ ଗମନ କରିଥିଲେ ତା. ୨୭.୦୨.୧୯୩୧ ରିଖରେ ଉତ୍ତରପ୍ରଦେଶର ଆହ୍ଲାବାଦ ଠାରେ । ତାଙ୍କ ପିତାଙ୍କ ନାମ ପଣ୍ଡିତ ସୀତାରାମ ତିୱାରୀ ।

***



# ଗୁଣରେ ନାହିଁ ତୁଳନା

ଇଏ ଆମ ଦେଶର କଥା । ଥିଲେ ଜଣେ ବାଳକ । ତାଙ୍କର ଘର ମହାରାଷ୍ଟ୍ର ରାଜ୍ୟରେ । ବାଳକଙ୍କୁ ଚାରିବର୍ଷ ବୟସ ହୋଇଥିବା ବେଳର କଥା । ଏତିକିବେଳେ ତାଙ୍କ ବାପା ଆର ପାରିକି ଚାଲିଗଲେ । ସେ ହୋଇଗଲେ ଅସହାୟ । ହେଲେ ବଡ ଭାଇ ତାଙ୍କୁ ଖୁବ୍ ଭଲ ପାଉଥିଲେ । ସେ ସାନଭାଇକୁ ଭଲମଣିଷ କରି ଗଢିବାରେ ଲାଗିଲେ । ଏଇ ପିଲା ବଡ ହେଲେ ଜଣେ ଭଲ ମଣିଷ ହୋଇ ବାହାରିବ - ଏକଥା ଜଣାପଡୁଥିଲା ତାଙ୍କ ପିଲାଦିନର ହାବଭାବରୁ ।

ପିଲାଟି ସ୍କୁଲରେ ପଢୁଥାଏ । ଦିନେ ଗୁରୁଜୀ ତାଙ୍କ ଶ୍ରେଣୀର ସବୁପିଲାଙ୍କୁ ଖଣ୍ଡିଏ ଅଙ୍କ କଷିବାକୁ ଦେଲେ । ବଡ ଆଶ୍ଚର୍ଯ୍ୟ କଥା ! ସେଇ ପିଲା ଛଡା ଆଉ

କେହି ସେହି ଅଙ୍କଟି କରିପାରିଲେ ନାହିଁ । ଶିକ୍ଷକ ସେଥିପାଇଁ ପିଲାଟି ଉପରେ ବହୁତ ଖୁସି ହୋଇଗଲେ । ପିଲାଟିକୁ ପାଖକୁ ଡାକି କହିଲେ, "ତୁମେ ଆଜିଠାରୁ ପ୍ରଥମ ଧାଡି ବେଞ୍ଚରେ ବସିବ ।"

ପିଲାଟି କିନ୍ତୁ ନିଜ ଆସନରୁ ଉଠିଲା ନାହିଁ । "କଣ ହେଲା ? ତୁମକୁ ପରା ଆଗଧାଡିରେ ବସିବା ପାଇଁ କହିଲି । ତୁମେ ଯାଇ ବସୁନ କାହିଁକି ? ତୁମେ ଜଣେ ମେଧାବୀ ଛାତ୍ର ବୋଲି ମୁଁ ତୁମକୁ ଆଗ ଧାଡି ବେଞ୍ଚରେ ବସିବା ପାଇଁ କହିଲି ।"

ପିଲାଟି କହିଲା, "ଗୁରୁଜୀ ! ଗତିକାଲି ରାତିରେ ମୁଁ ଏଇ ଅଙ୍କଟିକୁ ଅନ୍ୟ ଜଣକ ପାଖରୁ କଷିବା ଶିଖିଥିଲି । ସେଇଥି ପାଇଁ ନିର୍ଭୁଲରେ ଆଜି ଏଇଠି ଏଇ ଅଙ୍କଟିକୁ କରିପାରିଛି । ପରର ସାହାଯ୍ୟ ପାଇ ମୁଁ ଏଇ ସଫଳତା ପାଇଲି । ଏଇ ସଫଳତା ପାଇଁ ମୋର ନିଜର କିଛି ବାହାଦୁରୀ ନାହିଁ । ଏଭଳି ସୁଯୋଗରେ ଆଗ ବେଞ୍ଚରେ ବସିବା ବଡ ଅନ୍ୟାୟ । ଏଣୁ ମୁଁ ଆଗ ବେଞ୍ଚରେ ବସିବାକୁ ଚାହେଁନି ।"

ପିଲାଟି ମୁହଁରୁ ଏପରି ଉତ୍ତର ପାଇ ଶିକ୍ଷକ ବଡ ଆଶ୍ଚର୍ଯ୍ୟ ହୋଇଗଲେ । କିଛି ସମୟ ଗମ୍ଭୀର ହୋଇ ବସିପଡିଲେ । ପିଲାଟିର ଏହି କେତୋଟି ଶବ୍ଦ ଶିକ୍ଷକଙ୍କୁ ଚକିତ କରିଦେଲା । ସେ ପିଲା ମୁହଁରୁ ଏପରି ଉତ୍ତର ପାଇ ଆଶ୍ଚର୍ଯ୍ୟ ହୋଇଗଲେ । ପିଲାଟିର ସ୍ପଷ୍ଟବାଦିତା ଓ ସତ୍ୟବାଦିତା ପାଇଁ ବହୁତ ଖୁସି ହୋଇଗଲେ । ତାଙ୍କର ଛାତ୍ର ଏପରି ଉତ୍ତର ଦେଇଥିବାରୁ ସେ ନିଜକୁ ମଧ୍ୟ ଧନ୍ୟ ମନେକଲେ । ଏହି ପିଲା ବଡ ହେଲା । ବହୁତ ନାଁ କମେଇଲା । ସାରା ଭାରତର ଘରେ ଘରେ ପରିଚିତ ହେଲା ।

ସେ ହେଉଛନ୍ତି ଭାରତର ଖ୍ୟାତନାମା ଦେଶପ୍ରେମୀ ଗୋପାଳ କୃଷ୍ଣ ଗୋଖେଲ । ମହାମତି ଗୋଖେଲ ନାମରେ ସେ ପରିଚିତ । ୧୮୬୬ ମସିହା ମଇ ମାସ ୯ ତାରିଖରେ ତାଙ୍କର ଜନ୍ମ । ତାଙ୍କ ଜନ୍ମସ୍ଥାନ ହେଉଛି ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲା ଅନ୍ତର୍ଗତ କାଟଲୁକ ଗାଁ । ଗୋଟିଏ ଗରିବ ବ୍ରାହ୍ମଣ ପରିବାରରେ

ତାଙ୍କର ଜନ୍ମ । ସେ ବାଲ୍ୟକାଳରେ ପ୍ରକୃତରେ ଥିଲେ ଜଣେ ମେଧାବୀ ଛାତ୍ର । ପନ୍ଦର ବର୍ଷ ବୟସରେ ମାଟ୍ରିକ ଓ ଅଠର ବର୍ଷ ବୟସରେ ସେ ବି.ଏ. ପାସ କଲେ । ତା'ପରେ ପୁନାର ଫର୍ଗୁସନ କଲେଜରେ ହେଲେ ଗଣିତ ବିଭାଗ ଅଧ୍ୟାପକ । ସେ ପିଲାଙ୍କ ପାଇଁ ଗଣିତ ବହି ଲେଖିଯାଇଛନ୍ତି । ଅଙ୍କ ବା ଗଣିତ ବିଦ୍ୟାରେ ସେ ଥିଲେ ପ୍ରବୀଣ ।

ଗୋପାଳ କୃଷ୍ଣ ଥିଲେ ଜଣେ ସମାଜସେବୀ । ସମାଜ ସଂସ୍କାରକ । 'ଭାରତ ସେବକ ସମାଜ'ର ପ୍ରତିଷ୍ଠାତା । ସେ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ଜଣେ ସୁବକ୍ତା ମଧ୍ୟ । ସ୍ୱାଧୀନତା ଆନ୍ଦୋଳନ ନିମନ୍ତେ ସେ କଂଗ୍ରେସରେ ଯୋଗ ଦେଇଥିଲେ । ୧୯୦୫ ମସିହାରେ ସେ ହୋଇଥିଲେ ଭାରତର ଜାତୀୟ କଂଗ୍ରେସର ସଭାପତି । ଜୀବନସାରା ବହୁ ଅନୁଷ୍ଠାନ ସହିତ ଥିଲେ ଜଡିତ । ବ୍ୟବସ୍ଥାପକ ସଭାର ସେ ଥିଲେ ସଭ୍ୟ । ଦେଶରେ ଶିଳ୍ପଭିତ୍ତିକ ଶିକ୍ଷା, କୃଷିର ଉନ୍ନତି ଓ ବୟନ ଶିଳ୍ପର ବିକାଶ ପାଇଁ ସେ ଇଂରେଜ ସରକାରଙ୍କୁ ପରାମର୍ଶ ଦେଇଥିଲେ । ଲୋକଙ୍କ ମଂଗଳ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ ସେ । ତାଙ୍କୁ କୁହାଯାଏ 'ଦେଶପ୍ରେମର ରାଜକୁମାର' ଓ 'ଭାରତର ଝୁଲାମଣି' । କାରଣ ସେ ଦେଶର ଉନ୍ନତି ପାଇଁ ବହୁକଥା ଭାବୁଥିଲେ- ଆଉ ତିଆରି କରୁଥିଲେ ବହୁଯୋଜନା ମଧ୍ୟ । ଦେଶର ଉନ୍ନତି ପାଇଁ ତାଙ୍କ ମନ ଥିଲା ସଦାବ୍ୟାକୁଳ । ସେ ଆଉ ନାହାନ୍ତି । ୧୯୧୫ ମସିହା ଫେବୃୟାରୀ ୧୯ ତାରିଖରେ ତାଙ୍କର ପୁନାଠାରେ ଦେହାନ୍ତ ହୋଇଯାଇଛି । ସେ କିନ୍ତୁ ମରି ଆଜି ଅମର । ତାଙ୍କ ଗୁଣର ନାହିଁ ତୁଳନା !

⁂⁂⁂

| Sl.no. | Name of the Books | |
|---|---|---|
| | **English** | **Odia** |
| 1. | Panchamruta | ପଞ୍ଚାମୃତ |
| 2. | Ama Odisha | ଆମ ଓଡ଼ିଶା |
| 3. | Water borne Diseases | ଜଳ ବି ରୋଗର ବାହାକ |
| 4. | Dhanu Yatra | ଧନୁ ଯାତ୍ରା |
| 5. | Ama Gita Ama Mita | ଆମ ଗୀତ ଆମ ମିତ |
| 6. | Bhima Bhoi | ଭୀମ ଭୋଇ |
| 7. | Ama lokabandhu Gopabandhu | ଆମଲୋକ ବନ୍ଧୁ ଗୋପବନ୍ଧୁ |
| 8. | Asa bulijiba durga barabati | ଆସ ବୁଲିଯିବା ଦୁର୍ଗ ବାରବାଟୀ |
| 9. | Dharmapada | ଧର୍ମପଦ |
| 10. | Kalahandi re loka katha | କଳାହାଣ୍ଡିର ଲୋକକଥା |
| 11. | Maja Ganita (Funny math) | ମଜା ଗଣିତ |
| 12. | Sangrami Banabasi | ସଂଗ୍ରାମୀ ବନବାସୀ |
| 13. | Julu's Space Tour. | ଜୁଲୁର ଆକାଶ ବୁଲା |
| 14. | Baxi Jagabandhu | ବକ୍ସି ଜଗବନ୍ଧୁ |
| 15. | chithi | ଚିଠି |
| 16. | Bipadar bandhu | ବିପଦର ବନ୍ଧୁ |
| 17. | Helen Keller Stories | ହେଲେନ୍ କେଲର୍ |
| 18. | Tara raija katha | ତାରା ରାଇଜ କଥା |
| 19. | Fuggy | ଫୁଜି |
| 20. | Bibartanaru banar nara | ବିବର୍ତ୍ତନରୁ ମାନବ ନର |
| 21. | Ame photo senthesis bisayare kipari janile | ଆମେ ‘ଫୋଟୋସିନ୍ଥେସିସ୍ ବିଷୟରେ କିପରି ଜାଣିଲେ |
| 22. | Ame anka bisayare kipari janile | ଆମେ ଅଙ୍କ ବିଷୟରେ କିପରି ଜାଣିଲେ |
| 23. | Khara | ଖରା |
| 24. | Gyana o charitra | ଜ୍ଞାନ ଓ ଚରିତ୍ର |
| 25. | Prerana | ପ୍ରେରଣା |
| 26. | Akasa Nila Dise Kahinki | ଆକାଶ ନୀଳ ଦିଶେ କାହିଁକି |
| 27. | Sathi Bigyani KARVAR | ସାଥି ବିଜ୍ଞାନୀ କାର୍ଭର |